

## ଦୈନନ୍ଦିନ

# ଶ୍ରୀମନ୍ଦିର ନୀତି

**Daily Rituals of Shri Jagannath Temple**


ଲେଖକ

ଶ୍ରୀ ଭାସ୍କର ମିଶ୍ର





ଏସ୍‌ବି ପବ୍ଲିକେଶନ୍‌ସ

ଭରତିଆ ଟାୱାର
ବାଦାମବାଡ଼ି, କଟକ - ୭୫୩ ୦୦୯

ବିନୋଦ ବିହାରୀ
କଟକ - ୭୫୩ ୦୦୨

ଦୈନନ୍ଦିନ ଶ୍ରୀମନ୍ଦିର ନୀତି

ଲେଖକ :

ଶ୍ରୀ ଭାସ୍କର ମିଶ୍ର

ଉପ ପ୍ରଶାସକ, ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ, ପୁରୀ

ପ୍ରକାଶକ :

ନଳିନୀକାନ୍ତ ନନ୍ଦ

ଏସ୍‌ବି ପବ୍ଲିକେଶନ୍‌ସ

- ବିନୋଦ ବିହାରୀ, କଟକ- ୭୫୩ ୦୦୨
- ଭରତିଆ ଟାୱାର, ବାଦାମବାଡ଼ି, କଟକ- ୭୫୩ ୦୦୯

ଦ୍ୱିତୀୟ ପରିମାର୍ଜିତ ସଂସ୍କରଣ- ୨୦୦୭



ପ୍ରାପ୍ତିସ୍ଥାନ- ଶ୍ରୀମନ୍ଦିର ସୂଚନା କେନ୍ଦ୍ର, ପୁରୀ
ବିଦ୍ୟା ଭବନ, ପୁରୀ

---

**SRIMANDIR NEETI**

(Daily Rituals of Shri Jagannath Temple, Puri)

*Written by :*

**Sri Bhaskar Mishra**

Deputy Administrator

Shri Jagannath Temple Administration, Puri



*Published by :*

**Nalini Kanta Nanda**

**SB PUBLICATIONS**

Binod Behari, Cuttack- 753 002

Bharatia Tower, Badambadi, Cuttack- 753 009

**2nd Revised Edition- 2007**

D.T.P.- **SB GRAFIX, CUTTACK- 753 012**

Printed at- **Shyam Printers.**

**Price Rs. 50.00**

**ISBN 81 7404 086 2**

ଉତ୍ସର୍ଗ ......

ଏ ପୁସ୍ତକର ସୃଷ୍ଟି ପାଇଁ ଯାହାଙ୍କର ପ୍ରଥମ ପ୍ରେରଣା ଓ ଉତ୍ସାହ ମିଳିଛି, ସେହି ପ୍ରିୟ ବନ୍ଧୁ, ଦିଗ୍‌ଦର୍ଶକ ତଥା ଶ୍ରୀଜଗନ୍ନାଥ ସଂସ୍କୃତିର ଅନ୍ୟତମ ଗବେଷକ ଡ଼ଃ ସୁରେନ୍ଦ୍ର କୁମାର ମିଶ୍ରଙ୍କୁ ପୁସ୍ତକଟିକୁ ଉତ୍ସର୍ଗ ପୂର୍ବକ ଦାରୁବ୍ରହ୍ମରୂପୀ ଶ୍ରୀବିଗ୍ରହମାନଙ୍କ ପଦାରବିନ୍ଦରେ ପ୍ରଣିପାତ କରି ତାଙ୍କର ମଙ୍ଗଳକାମନା କରୁଛି ।

ଭାସ୍କର




ଶ୍ରୀ ଗୋପାଳ ଚନ୍ଦ୍ର ମହାନ୍ତି
ଶାସନ ସଚିବ, ବିଧି ବିଭାଗ, ଓଡ଼ିଶା
ଭୁବନେଶ୍ୱର

ଓଡ଼ିଶାର ସାଂସ୍କୃତିକ ପରମ୍ପରା ଶ୍ରୀଜଗନ୍ନାଥ ସଂସ୍କୃତିକୁ ନେଇ ଖୁବ୍ ସମୃଦ୍ଧ । ସଂସ୍କୃତି ଗୋଟିଏ ଜାତିର ସାମଗ୍ରିକ ସତ୍ତାର ନିର୍ଯ୍ୟାସ । ଆମର ସାମଗ୍ରିକ ସତ୍ତା ଜଗନ୍ନାଥମୟ । ଆମର ଇତିହାସ, କଳା, ଭାସ୍କର୍ଯ୍ୟ ଓ ସାହିତ୍ୟ ଜଗନ୍ନାଥଙ୍କୁ ଛାଡ଼ି ଆଲୋଚିତ ହେବା ସମ୍ଭବ ନୁହେଁ । ଆମର ଉତ୍ସବ, ପର୍ବପର୍ବାଣୀ ଏବଂ ଚଳଣିରେ ଜଗନ୍ନାଥ ଖୁବ୍ ଆପଣାର ।

ଜଗନ୍ନାଥ ସଂସ୍କୃତିର ଅବିଚ୍ଛିନ୍ନ ପ୍ରବାହ କେଉଁ ଅନାଦିକାଳରୁ ଶତତ ଗତିଶୀଳ । ଏହି ପ୍ରବାହରେ ଭାରତର ବିଭିନ୍ନ ସଂପ୍ରଦାୟ ତଥା ଧାରା ସମ୍ମିଳିତ ହୋଇଛନ୍ତି । ଫଳରେ ଜଗନ୍ନାଥ ସଂସ୍କୃତି ଋଦ୍ଧିବନ୍ତ ହୋଇଛି । ଅଷ୍ଟମ ଶତାବ୍ଦୀରେ ଆଦି ଶଙ୍କର ଶ୍ରୀକ୍ଷେତ୍ର ଆସିବା ପରଠାରୁ ଉପାସନା କ୍ଷେତ୍ରରେ ଶ୍ରୀମନ୍ଦିରରେ ଅନେକ ପରିବର୍ତ୍ତନ ଘଟିଥିଲା । ଏହା ପରେ ରାମାନୁଜାଚାର୍ଯ୍ୟ, ବଲ୍ଲଭାଚାର୍ଯ୍ୟ, ନିମ୍ବାର୍କାଚାର୍ଯ୍ୟ, ରାମାନନ୍ଦାଚାର୍ଯ୍ୟ, ଗୁରୁ ନାନକ, ଶଙ୍କର ଦେବ, ତୁଳସୀ ଦାସ, ଗଣପତି ଭଟ୍ଟ, ଶ୍ରୀଚୈତନ୍ୟ ଓ ପଞ୍ଚସଖା ଆଦି ଆଚାର୍ଯ୍ୟଗଣ ବିଭିନ୍ନ ସମୟରେ ଏହି ପବିତ୍ର ଧାମକୁ ଆସିଛନ୍ତି । ସମସ୍ତଙ୍କର କିଛି ନା କିଛି ପଦଚିହ୍ନ ଉପାସନା କ୍ଷେତ୍ରରେ ଅନୁଭୂତ ହୁଏ ।

ଉପାସନାକୁ ଭିତ୍ତି କରି ମହାପ୍ରଭୁଙ୍କର ଦୈନନ୍ଦିନ ଦିନଚର୍ଯ୍ୟା । ସେହି ଦିନଚର୍ଯ୍ୟାକୁ ଆମେ ''ନୀତି'' ରୂପେ ଗ୍ରହଣ କରିଛୁ । ''ଯଥା ଦେହେ ତଥା ଦେବେ'' କିମ୍ବା ''ଦେବୋ ଭୂତ୍ୱା ଦେବଂ ଯଜେତ୍'' ଏଇ ଯେଉଁ କର୍ମକାଣ୍ଡର ଗହନ ଦର୍ଶନ ତାହାକୁ ସାମନାରେ ରଖି ଉପାସନାରେ ପ୍ରବର୍ତ୍ତିତ ହୁଏ । ତାହା ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ନିକଟରେ ଖୁବ୍ ତାର୍କିକ, ସୈଦ୍ଧାନ୍ତିକ ଓ ପ୍ରାମାଣିକ ରୂପେ ପ୍ରଚଳିତ । ତେଣୁ ଶାକ୍ତମାନେ ଉପାସନାକୁ ଗ୍ରହଣ କରି ନେବାବେଳେ ବୈଷ୍ଣବ, ଶୈବ, ଗାଣପତ୍ୟ ଏବଂ ବୈଷ୍ଣବାଗମବାଦୀମାନେ ନିର୍ବିବାଦରେ ଗ୍ରହଣ କରିଛନ୍ତି ।

ଅତଏବ ଗୋଟାଏ ସର୍ବମାନ୍ୟ ଉପାସନା ଶୈଳୀ ଶ୍ରୀମନ୍ଦିରରେ ପ୍ରଚଳିତ । ସେଇ ଉପାସନା ମଧ୍ୟରେ ମହାପ୍ରଭୁମାନଙ୍କ ନିଦ୍ରାଭଙ୍ଗ ଠାରୁ ପହୁଡ଼ ପର୍ଯ୍ୟନ୍ତ ସମସ୍ତ ଦେବ ନୀତି ବିଜ୍ଞାନ ସମ୍ମତଭାବେ ସନ୍ନିବିଷ୍ଟ ।

କ'ଣ ସେ ନୀତି ? କାହିଁକି ସେ ନୀତି ? କାହା ପରେ କେଉଁ ନୀତି ହୁଏ ? କେଉଁମାନେ କରନ୍ତି ? କ'ଣ ପାଇଁ କରନ୍ତି ? ଏହି ସବୁ ବିଷୟରେ ସବିଶେଷ ଆଲୋଚନା ସ୍ୱତନ୍ତ୍ରଭାବେ ଗୋଟିଏ ଗ୍ରନ୍ଥରେ ଆମପାଇଁ ଉପଲବ୍ଧ ନଥିଲା । ବିଶିଷ୍ଟ ପ୍ରାବନ୍ଧିକ, ସାହିତ୍ୟିକ, ଗବେଷକ ତଥା ବିଧି ବିଭାଗର ସ୍ୱତନ୍ତ୍ର ପଦାଧିକାରୀ (ଶ୍ରୀମନ୍ଦିର ପ୍ରଶାସନ) ଶ୍ରୀଯୁକ୍ତ ଭାସ୍କର ମିଶ୍ର ବହୁ ଶ୍ରମ କରି ପ୍ରଥମ ଥର ନିମନ୍ତେ ଶ୍ରୀମନ୍ଦିରର ଦୈନନ୍ଦିନ ନୀତିର କ୍ରମାନ୍ୱୟ ଆଲୋଚନା କରିଛନ୍ତି । ପ୍ରତ୍ୟେକ ଜଗନ୍ନାଥ ପ୍ରେମୀ, ଭାରତବର୍ଷର ହିନ୍ଦୁ ଜନସାଧାରଣ ତଥା ଗବେଷକମାନଙ୍କ ପାଇଁ ଏହି ଗ୍ରନ୍ଥ 'ଅଭିଧାନ' ସଦୃଶ ସହାୟତା କରିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଲେଖକଙ୍କର ନିରାମୟ ଓ ଦୀର୍ଘ ଜୀବନ ନିମିତ୍ତ ଦାରୁବ୍ରହ୍ମରୂପୀ ଶ୍ରୀବିଗ୍ରହଙ୍କ ନିକଟରେ ପ୍ରାର୍ଥନା ଜଣାଉଛି ।

"ଜୟ ଶ୍ରୀ ଜଗନ୍ନାଥ"

ଗୋପାଳଚନ୍ଦ୍ର ମହାନ୍ତି

ଅଁଳା ନବମୀ, ୨୦୦୦ (ଗୋପାଳ ଚନ୍ଦ୍ର ମହାନ୍ତି)

# ପୁସ୍ତକ ସଂପର୍କରେ

ଅତ୍ୟନ୍ତ ପ୍ରାଚୀନ କାଳରୁ ବିଭିନ୍ନ ଧର୍ମ ଓ ଉପାସନାର ଧାରା ଶ୍ରୀଜଗନ୍ନାଥଙ୍କ ପୂଜା ପଦ୍ଧତି ଓ ସେବା ପୂଜା ନୀତିରେ ପ୍ରତିଫଳିତ ହୋଇ ଏହାକୁ ଏକ ଜୀବନ୍ତ ଓ ଶାଶ୍ୱତ ମାନବୀୟ ଧର୍ମରେ ପରିଣତ କରିଛି । ଅତୀତରୁ ତାଙ୍କୁ ଏହି ପବିତ୍ର ଭୂମିର ସର୍ବୋଚ୍ଚ କର୍ତ୍ତାରୂପେ ସ୍ୱୀକାର କରି ବହୁ ରାଜା, ମହାରାଜା ଶ୍ରୀବିଗ୍ରହଙ୍କର ଶରଣାପନ୍ନ ହୋଇଛନ୍ତି । ଉତ୍କଳର ଗଜପତି ମହାରାଜା ତାଙ୍କର ପ୍ରଧାନ ସେବକ, ଉତ୍କଳ ବି ଜଗନ୍ନାଥ ଦେଶ ନାମରେ ସୁବିଖ୍ୟାତ ଥିଲା । ବିଶିଷ୍ଟ ଦାର୍ଶନିକ ତଥା ଗବେଷକ ୮ଡଃ ସତ୍ୟବାଦୀ ମିଶ୍ରଙ୍କ ଭାଷାରେ "He is a living God, who lives and moves with us, too dear for our endearment, too living for our love's play, too intimate for many of our living moments of intimacies. He is so much human, so much divine and so much ever more about to be that He baffles all our understanding, surpasses all our logic and language."

ଶ୍ରୀଜଗନ୍ନାଥ ମନ୍ଦିରରେ ରତ୍ନସିଂହାସନାଧିଷ୍ଠିତ ଶ୍ରୀବିଗ୍ରହ ମାନଙ୍କର ଗୋଟିଏ ଦିନର (ସାଧାରଣ) ନୀତିଗୁଡ଼ିକୁ ଗୋଟିଏ ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ବନ୍ଧୁ ସୁରେନ୍ଦ୍ର ମିଶ୍ର ମୋତେ ପ୍ରସ୍ତାବ ଦେଇଥିଲେ । ତାଙ୍କର ପରାମର୍ଶ କ୍ରମେ ‘‘ଦୈନନ୍ଦିନ ଶ୍ରୀମନ୍ଦିର ନୀତି’’ ନାମରେ ପୁସ୍ତକଟିକୁ ପୂର୍ଣ୍ଣାଙ୍ଗ କରିବାରେ ମୋତେ ପ୍ରାୟ ଆଠମାସ ସମୟ ଲାଗିଥିଲା । ପୁସ୍ତକଟିର ପ୍ରକାଶନ ତଥା ରଚନା ସମୟରେ ଯେଉଁମାନଙ୍କର ପ୍ରେରଣା ତଥା ଉତ୍ସାହ ମିଳିଛି, ସେମାନେ ହେଲେ ସମ୍ମାନସ୍ପଦ ରାଜ୍ୟ ବିଧି ସଚିବ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ମହାନ୍ତି, ଯେ କି ପୁସ୍ତକଟିର ମୁଖବନ୍ଧ ଲେଖି ମୋତେ ଅନୁଗୃହୀତ କରିଛନ୍ତି । ଅନ୍ୟ ବିଶିଷ୍ଟ ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ପୁରୀ ଜିଲ୍ଲାପାଳ ଶ୍ରୀଯୁକ୍ତ ପ୍ରଦୀପ କୁମାର ମହାପାତ୍ର, ଶ୍ରୀମନ୍ଦିର ପ୍ରଶାସକ ଶ୍ରୀଯୁକ୍ତ ହିମାଂଶୁ ଶେଖର ସାମନ୍ତରାୟ, ପୂର୍ବତନ ପ୍ରଶାସକ ଶ୍ରୀଯୁକ୍ତ ଜୟନ୍ତ ନାରାୟଣ ପଣ୍ଡା, ଶ୍ରୀଯୁକ୍ତ ମହୀମୋହନ ତ୍ରିପାଠୀ, ବିଶିଷ୍ଟ ପ୍ରାବନ୍ଧିକ ଶ୍ରୀଯୁକ୍ତ ଜଗବନ୍ଧୁ ପାଢ଼ୀ, ଶ୍ରୀଯୁକ୍ତ ରାଜକିଶୋର ମିଶ୍ର, ଶ୍ରୀମନ୍ଦିର ପୁରୋହିତ ପଣ୍ଡିତ ହରିହର ମହାପାତ୍ର, ଅଧ୍ୟାପକ ସୁନୀଲ ରଥ, ରାଜ୍ୟ ସ୍ୱରାଷ୍ଟ୍ର ବିଭାଗ ଉପଶାସନ ସଚିବ ଶ୍ରୀଯୁକ୍ତ ପୂର୍ଣ୍ଣେନ୍ଦୁ କୁମାର ନନ୍ଦ, ‘‘ଶତାବ୍ଦୀ’’ର ପରିଚାଳନା ସଂପାଦକ ଶ୍ରୀଯୁକ୍ତ ଅସିତ୍ ମହାନ୍ତି, ଆଡ଼ଭୋକେଟ୍ ତଥା ପ୍ରିୟପତ୍ରର ସଂପାଦକ ବିପିନ୍ ବିହାରୀ ଦଳାଇ, ଶ୍ରୀଯୁକ୍ତ ପଦ୍ମନାଭ ପଣ୍ଡା, ସମାଜସେବିକା ପ୍ରତିମା ମିଶ୍ର, ସୁଲେଖାର

ସଂପାଦକ ସଦାଶିବ ମିଶ୍ର, ଜଗନ୍ନାଥବଲ୍ଲଭ ମଠ ସଭାପତି ଶ୍ରୀଯୁକ୍ତ ରାମଚନ୍ଦ୍ର ଦାସ ମହାପାତ୍ର, ଶ୍ରଦ୍ଧେୟ ରାଧାନାଥ ପ୍ରତିହାରୀ, ବନ୍ଧୁ ସୁରେନ୍ଦ୍ର ମହାନ୍ତି (ସନାତନୀ), ଶ୍ରୀମତୀ ଜ୍ୟୋତ୍ସ୍ନାରାଣୀ ତ୍ରିପାଠୀ, ରୁନୁ ମିଶ୍ର, ସବିତା ରଥ, ଆଡ଼ଭୋକେଟ୍ ଦିଲ୍ଲୀପ ନନ୍ଦ, ସହକର୍ମୀ ଲକ୍ଷ୍ମୀଧର ପୂଜାପଣ୍ଡା, ରାଧାରଞ୍ଜନ ମହାପାତ୍ର, ଦାମୋଦର ପୁଷ୍ପାଳକ, ଶ୍ୟାମପ୍ରକାଶ ସେନାପତି, ଜଟାଧାରୀ ମିଶ୍ର ପ୍ରମୁଖ ସ୍ମରଣୀୟ । ସମସ୍ତଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସଦାସର୍ବଦା ସହଯୋଗ କାମନା କରୁଅଛି । ପାଣ୍ଡୁଲିପି ପ୍ରସ୍ତୁତ ସମୟରେ ମୋର ପୁତ୍ର ଅଜିତାଭ ଓ କନ୍ୟା ଅନିଶାର ସହଯୋଗ ଅବିସ୍ମରଣୀୟ ।

ପୁସ୍ତକଟିର ମୁଦ୍ରଣଭାର ଦାୟିତ୍ୱ କଟକ ଏସ୍‌ବି ପବ୍ଲିକେଶନ୍ସର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ନଳିନୀକାନ୍ତ ନନ୍ଦ ଗ୍ରହଣ କରିଥିବାରୁ ତାଙ୍କୁ ମଧ ଧନ୍ୟବାଦାର୍ପଣ ଜଣାଉଅଛି ।

ପାଠକମାନଙ୍କ ମଧ୍ୟରେ ପୁସ୍ତକଟି ଆଦୃତ ହୋଇପାରିଲେ ମୋ' ଶ୍ରମ ସାର୍ଥକ ହେବ ।

ସର୍ବଶେଷରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚରଣାରବିନ୍ଦରେ ବିନମ୍ର ପ୍ରଣିପାତ ପୂର୍ବକ ଏ ସମଗ୍ର ସମାଜର ମଙ୍ଗଳକାମନା କରୁଅଛି ।

ବିନୀତ
ଭାସ୍କର ମିଶ୍ର

## ସୂଚୀପତ୍ର

◆◆◆

## ପରମେଶ୍ୱରଙ୍କ ନୀତି

ରାତ୍ର ୪ ଖୁରି ଥାଉଁ କବାଟ ଫିଟିବ । ରାତ୍ର ଏକ ଖୁରି ଥାଉଁ ପାହାନ୍ତି ଅବକାଶ ବଢ଼ିବ । ଦିନ ବେଳେ ୨ ଖୁରିକି ଗୋପାଳବଲ୍ଲଭ ହେବ । ବେଳ ୬ ଖୁରି ଠାରେ ସକାଳଧୂପ ହେବ, ପରେ ୪ ଖୁରିରେ ସାହାଣମେଲା ହେବ । ୧୪ ଖୁରି ଠାରେ ଦୁଇପ୍ରହର ଧୂପ ହେବ । ଏ ଉତ୍ତାରୁ ୨୦ ଖୁରି ମଧ୍ୟରେ ଅଧର ପୋଛା ଓ ମକୁନ୍ଦବଲ୍ଲଭ ବଢ଼ିବ । ୬ ଖୁରି ପହୁଡ଼ିବେ । ବେଳ ୨ ଖୁରି ଥାଉଁ କବାଟ ପଡ଼ିବ । ରାତ୍ର ୪ ଖୁରି ଠାରେ ସନ୍ଧ୍ୟାଧୂପ ହେବ । ଏ ଉତ୍ତାରୁ ୬ ଖୁରି ବଡ଼ସିଂହାର ବେଶ ବଢ଼ିବ । ରାତ୍ର ୧୨ ଖୁରି ଠାରେ ବଡ଼ସିଂହାର ବଢ଼ିବା ପରେ ପହୁଡ଼ ହେବ । ଯାହା ଦୋଷରୁ ନୀତି ଉଚ୍ଛୁର ହେବ, ସେ କୋଠ ଭଣ୍ଡାରକୁ ୧୦ ଅମୃତ କୁଣ୍ଡ ଗୁଣାଗାର ଦେବ । (ଖୁରି - ଦଣ୍ଡ) (ଗୁଣାଗାର - ଜୋରିମାନା ବା ଅର୍ଥଦଣ୍ଡ) ।



# ଶ୍ରୀମନ୍ଦିରର ନୀତି ନିର୍ଘଣ୍ଟ
## (ଦୁଇଶହ ବର୍ଷ ପୂର୍ବର)

ଆଜକୁ ଦୁଇଶହ ବର୍ଷ ପୂର୍ବରୁ ଶ୍ରୀମନ୍ଦିରରେ ଯେଉଁ ନୀତିନିୟମ ପ୍ରଚଳିତ ଥିଲା, ତାହାଠାରୁ ବର୍ତ୍ତମାନର ପ୍ରଚଳିତ ନୀତି ଭିନ୍ନ ନୁହେଁ । ମାତ୍ର ସମୟକ୍ରମେ ଏଥିରେ କେତେକ ପରିବର୍ତ୍ତନ ଘଟିଅଛି । ୧୮୦୫ ଖ୍ରୀଷ୍ଟାବ୍ଦରେ ରତ୍ନସିଂହାସନରେ ବିଜେ କରିଥିବା ଠାକୁରମାନଙ୍କର ଦୈନନ୍ଦିନ ନୀତି ସମ୍ପର୍କରେ ତତ୍କାଳୀନ ପୁରୀର କଲେକ୍ଟର ଗ୍ରୋମ୍ ସାହେବ (G. Grome) ତାଙ୍କ ରିପୋର୍ଟର ୩ ନମ୍ବର ତାଲିକାରେ ପ୍ରାଦେଶିକ କମିଶନର ସଚିବ ଥୋମାସ୍ ଫୋରଷ୍ଟେସ୍ କ୍ୟୁଙ୍କ ନିକଟକୁ ଲେଖିଥିଲେ । ନିମ୍ନରେ ତାହା ଉଲ୍ଲେଖ କରାଗଲା ।

୧) ରାତ୍ର ଶେଷ ହେବାକୁ ଦୁଇଘଣ୍ଟା ଥିବ, ମଙ୍ଗଳ ଆରତୀ ହୁଏ ।
"Mungula Auruty is begun when 2 hours of the night remain."

୨) ସୂର୍ଯ୍ୟୋଦୟ ପୂର୍ବରୁ ପୁରୁଷୋତ୍ତମ ଅବକାଶ ହୁଏ ।
"Poorostumuppokas furnished before sunrise."

୩) ଗୋପାଳବଲ୍ଲଭ, ସୂର୍ଯ୍ୟୋଦୟର ଦୁଇଘଣ୍ଟା ପରେ ହୁଏ ।
"Gopalbullaf fumished by 2 hours after day's sly."

୪) ସୂର୍ଯ୍ୟୋଦୟ ପରେ, ଦିବା ଦଶଘଟିକା ସମୟରେ ସକାଳ ଧୂପ ହୁଏ ।
"Suckal Dhoop - furnished by 10 hours after daylight."

୫) ଦିବା ଦୁଇଘଣ୍ଟା ସମୟରେ, ଜଗନ୍ନାଥବଲ୍ଲଭ ଅବକାଶ ହୁଏ ।
"Jugganath bullub up-pokass furnished by 14 hours after daylights."

୬) ସନ୍ଧ୍ୟା ଆଠ ଘଟିକା ସମୟରେ ମଧ୍ୟାହ୍ନ ଧୂପ ହୁଏ ।
"Muddunnoo Dhoop furnished by 20 hours after daylight."

୭) ଶୟନ ବା ପହୁଡ଼ ଆରତି ।
"Shyun or Pohrooarutty."

୮) ଟେରାଫିଟା ଅବକାଶ ।
"Tarapitah uppokas."

୯) ସୂର୍ଯ୍ୟାସ୍ତ ଦୁଇଘଣ୍ଟା ପୂର୍ବରୁ ହୁଏ ।
"Sundiah aruthy is furnished when 2 hours of the day remain."

୧୦) ସୂର୍ଯ୍ୟାସ୍ତର ଛଅଘଣ୍ଟା ପରେ ହୁଏ ।

"Sundia Dhoop furnished by 6 hours after dark."

୧୧) ବଡ଼ସିଂହାର ଅବକାଶ ।

"Burrasingar Uppokas."

୧୨) ବଡ଼ ସିଂହାର ବେଶ ।

"Burrasingar Bess."

୧୩) ରାତ୍ର ଏକ ପ୍ରହର ସମୟରେ ଚନ୍ଦନଲାଗି ଶେଷ ହୁଏ ।

"Chundanlaggy is finished by one pahar of the night."

୧୪) ବଡ଼ ସିଂହାର ଭୋଗ ।

"Burrasingar Bhog."

୧୫) ବଲ୍ଲଭ ଭୋଗ

"Bullub Bhoog."

ପୁଷ୍ପାଞ୍ଜଳି

"Poospaunjally."

ପହୁଡ଼ ଆରତୀ

"Pahoora Aruthy."

ଶୟନ, ରାତ୍ର ବାରଘଣ୍ଟା ସମୟରେ ହୁଏ ।

"Shyeen-finished by 12 at night."

ସେହିପରି ଠାକୁରମାନଙ୍କ ଦୈନନ୍ଦିନ ନୀତି ସମ୍ବନ୍ଧରେ ଓଡ଼ିଶା ସରକାରଙ୍କ ସ୍ପେଶିଆଲ ଅଫିସରଙ୍କ ତା ୩୦-୪-୧୯୬୫ ମସିହା ରିପୋର୍ଟ ଅନୁସାରେ :

(୧) ଦ୍ୱାର ଫିଟା ଓ ଦୈନିକ ମଙ୍ଗଳ ଆଳତି ଉଷାକାଳ ଅର୍ଥାତ୍ ଭୋର ୫ ଘଟିକା ବା ତତ୍ ପୂର୍ବରୁ ହେବାର ନିୟମ ।

(୨) ପୂର୍ବାହ୍ନ ୬ ଘଟିକା ସମୟରେ ମଇଲମ ଲାଗି ହୁଏ । ମଇଲମ ଲାଗି ପରେ ଅବକାଶ ପୂର୍ବାହ୍ନ ୬-୬.୩୦ ଘଟିକା ମଧରେ ହେବାର ନିମୟ । ଅବକାଶ ପରେ ସକାଳ ସାତ ଘଣ୍ଟା ସମୟରେ ସାହାଣମେଲା ବା ସର୍ବସାଧାରଣ ଦର୍ଶନ ହୁଏ । ସକାଳ ଆଠ ଘଣ୍ଟା ଠାରୁ ଆଠ ଘଣ୍ଟା ତିରିଶ ମିନିଟ୍‌ରେ ବେଶ ଲାଗି ହୁଏ ।

(୩) ସକାଳ ଆଠ ଘଣ୍ଟା ଠାରୁ ଆଠ ଘଣ୍ଟା ତିରିଶ ମିନିଟରେ ରୋଷ ହୋମ ହୁଏ । ରୋଷ ହୋମ ପରେ, ସୂର୍ଯ୍ୟ ପୂଜା ସକାଳ ଆଠ ଘଣ୍ଟା ତିରିଶ ମିନିଟ୍ ଠାରୁ ଆଠ ଘଣ୍ଟା ପଇଁଚାଳିଶ ମିନିଟ୍ ମଧ୍ୟରେ ହୁଏ । ସୂର୍ଯ୍ୟ ପୂଜା ପରେ, ଦ୍ୱାରପାଳ ପୂଜା ହୋଇ, ଗୋପାଳ ବଲ୍ଲଭ ଭୋଗ ସକାଳ ନଅ ଘଣ୍ଟା ଠାରୁ ନଅ ଘଣ୍ଟା ଚାଳିଶ ମିନିଟରେ ହୁଏ ।

(୪) ସକାଳ ଧୂପ, ଦିବା ଦଶ ଘଟିକା ସମୟରେ ହେବାର ନିୟମ ।

(୫) ସକାଳ ଏଗାର ଘଟିକା ସମୟରେ ମଇଲମ ଓ ଭୋଗ ମଣ୍ଡପ ଭୋଗ ହୁଏ ।

(୬) ଦିବା ବାର ଘଟିକା ତିରିଶ୍ ମିନିଟ୍‌ରେ ଓ ଏକ ଘଟିକା ମଧ୍ୟରେ ମଧ୍ୟାହ୍ନ ଧୂପ ହେବାର ନିୟମ ।

(୭) ମଧ୍ୟାହ୍ନ ପହୁଡ଼, ଦିବା ଏକ ଘଟିକା ବା ଏକ ଘଟିକା ତିରିଶ ମିନିଟ୍‌ରେ ହେବା ନିୟମ ।

(୮) ଅପରାହ୍ନ ଛଅ ଘଣ୍ଟା ସମୟରେ ପହୁଡ଼ ଫିଟିବାର ନିୟମ ।

(୯) ପହୁଡ଼ ଫିଟିବା ପରେ, ଛଅ ଘଣ୍ଟା ସମୟରେ ସନ୍ଧ୍ୟା ।

(୧୦) ରାତ୍ର ସାତ ଘଟିକା ଓ ଆଠ ଘଟିକା ମଧ୍ୟରେ ସନ୍ଧ୍ୟା ଧୂପ ହେବାର ନିୟମ ।

(୧୧) ରାତ୍ର ୧୦ ଘଣ୍ଟା ସମୟରେ ମଇଲମ ଲାଗି ହୋଇ, ଚନ୍ଦନ ଲାଗି ହେବାର ନିୟମ ।

(୧୨) ରାତ୍ର ଦଶ ଘଟିକା ତିରିଶ୍ ମିନିଟରେ ବଡ଼ ସିଂହାର ବେଶ ହେବାର ନିୟମ ।

(୧୩) ରାତ୍ର ଏଗାର ଘଟିକା ବାର ମିନିଟ୍‌ରେ ବଡ଼ ସିଂହାର ଧୂପ (ଭୋଗ) ହେବାର ନିୟମ ।

(୧୪) ଖଟଶେଯ ଲାଗି ବୀଣା ଓ ଗାନ, ପୁଷ୍ପାଞ୍ଜଳି, ପହୁଡ଼, ମୁଦ ଓ ଶୋଧ, ଏହିନୀତି ରାତ୍ର ଏଗାର ଘଟିକା ପଞ୍ଚଚାଳିଶ ମିନିଟ୍ ଠାରୁ ବାର ଘଣ୍ଟା ମଧ୍ୟରେ ହେବାର ନିୟମ ।



# ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକା

## ଶ୍ରୀଜୀଉଙ୍କ ନୀତି ବିବରଣ

| ନୀତିର ନାମ | | ନିରୂପିତ ସମୟ | କରାଯାଇଥିବା ସମୟ | ମନ୍ତବ୍ୟ |
|---|---|---|---|---|
| ଦ୍ୱାରଫିଟା | ପ୍ରାତଃ | ଘ୫ | | |
| ଭିତର ଶୋଧ | | ଘ୫-୩୦ | | |
| ମଙ୍ଗଳ ଆଳତି | | ଘ୬ | | |
| ମଇଲମ ଓ ତଡ଼ପଲାଗି ବେଶ | | ଘ୬-୩୦ | | |
| ଅବକାଶ | ସକାଳ | ଘ୭ | | |
| ସାହାଣମେଲା | | ଘ୮-୧୫ରୁ ଘ୯ | | |
| ବେଶ | | ଘ୯ରୁ ଘ୯-୩୦ | | |
| ରୋଷ ହୋମ<br>ସୂର୍ଯ୍ୟପୂଜା<br>ଦ୍ୱାରପାଳ ପୂଜା | | ଘ୯ରୁ ଘ୯-୩୦ | | |
| ଗୋପାଳବଲ୍ଲଭ | | ଘ୧୦-୩୦ | | |
| ସକାଳ ଧୂପ | | ଘ୧୧ରୁ ଘ୧୨ | | |
| ପ୍ରସାଦ ବାହାରି ପାଣି ପଡ଼ିବା | | ଘ୧୨ରୁ ଘ୧୨-୩୦ | | |
| ମଇଲମ ବେଶ | | ଘ୧୨-୦୦ରୁ ଘ୧ | | |
| ଭୋଗ ମଣ୍ଡପ | | ଘ୧୨-୩୦ରୁ ଘ୨ | | |
| ମଧ୍ୟାହ୍ନ ଧୂପ | ଦିବା | ଘ୨-୩୦ ରୁ | | |
| ପ୍ରସାଦ ବାହାରି ପାଣି ପଡ଼ିବା | | ଘ୩-୩୦ | | |
| ମଇଲମ, ବେଶ | ଅପରାହ୍ନ | ଘ୩-୩୦ ରୁ ଘ୪ | | |
| ଦିବା ପହୁଡ଼ | | ଘ୪-୩୦ | | |
| ଦ୍ୱାର ଫିଟା | | ଘ୬-୩୦ | | |
| ସନ୍ଧ୍ୟା ଆଳତୀ | ସନ୍ଧ୍ୟା | ୭ ଘ | | |
| ମଇଲମ ବେଶ | | ଘ୭-୩୦ | | |
| ସନ୍ଧ୍ୟା ଧୂପ | ରାତ୍ର | ଘ୮ରୁ ଘ୯ | | |
| ପ୍ରସାଦ ବାହାରି ପାଣି ପଡ଼ିବା | | ଘ୯-୩୦ | | |
| ସାହାଣ ମେଲା | | ଘ୯-୩୦ ରୁ ଘ୧୦ | | |
| ମଇଲମ ଚନ୍ଦନ ଲାଗି | | ଘ୧୦ରୁ ଘ୧୦-୩୦ | | |
| ବଡ଼ ସିଂହାର ବେଶ | | ଘ୧୧ | | |
| ବଡ଼ ସିଂହାର ଭୋଗ | | ଘ୧୧-୩୦ | | |
| ରାତ୍ର ପହୁଡ଼ | | ଘ୧୨ | | |



# ଶ୍ରୀମନ୍ଦିରର ଦ୍ୱାରଫିଟା ଓ ଭିତର ଶୋଧ ନୀତି

ଅତ୍ୟନ୍ତ ପ୍ରାଚୀନ ସମୟରୁ ଶ୍ରୀମନ୍ଦିରରେ ପ୍ରଚଳିତ ବିଭିନ୍ନ ପରମ୍ପରା, ସନାତନ ଧର୍ମ, ଉପାସନାର ଧାରା ଶ୍ରୀଜଗନ୍ନାଥଙ୍କ ପୂଜା ପଦ୍ଧତିରେ ପ୍ରତିଫଳିତ ହୋଇ ଏହାକୁ ଏକ ଜୀବନ୍ତ ଓ ମାନବୀୟ ଧର୍ମରେ ପରିଣତ କରିଅଛି । ଶ୍ରୀମନ୍ଦିରର ବହୁଳ ଓ ଜଟିଳ ନୀତି ଦୃଷ୍ଟିରୁ ସର୍ବଭାରତୀୟ ସ୍ତରରେ ଥିବା ଅନ୍ୟାନ୍ୟ ଦେବାଳୟ ତଥା ଧର୍ମାନୁଷ୍ଠାନ ଠାରୁ ଏହା ସ୍ୱତନ୍ତ୍ର ତଥା ଅନନ୍ୟ ।

ସାଧାରଣତଃ ବର୍ଷ ମଧ୍ୟରେ ଶ୍ରୀଜଗନ୍ନାଥ ମନ୍ଦିରରେ ଯେଉଁ ନୀତି ପାଳିତ ହୁଏ, ମୁଖ୍ୟତଃ ତାହା ଚାରି ଭାଗରେ ବିଭକ୍ତ ଅଟେ । ଯଥା ଦୈନିକ ନୀତି, ସାମୟିକ ନୀତି ଯାନିଯାତ୍ରା ସମ୍ପର୍କୀୟ ନୀତି ଏବଂ ଗୁପ୍ତ ନୀତି । ରତ୍ନସିଂହାସନାଧିଷ୍ଠିତ ଶ୍ରୀବିଗ୍ରହମାନଙ୍କର ନିତ୍ୟନୈମିତ୍ତିକ ପୂଜା ବିଧି, ବିଶିଷ୍ଟ ପର୍ବ, ଯାନିଯାତ୍ରା ଇତ୍ୟାଦି ଅନୁସୃତ ବିଧିବିଧାନ ବିଷୟ ନୀଳାଦ୍ରି-ମହୋଦୟ, ସୂତ-ସଂହିତା, ବାମଦେବ-ସଂହିତା, ନୀଳାଦ୍ରିନାଥ-ପୂଜାବିଧି, ଗୋପାଳାର୍ଚ୍ଚନ ପୂଜାବିଧିରେ ଉଲ୍ଲେଖ ହୋଇଥିବା ଜଣାଯାଏ ।

ଶ୍ରୀଜଗନ୍ନାଥ ମନ୍ଦିରରେ ପାଳିତ ଦୈନିନ୍ଦିନ ନୀତି ମଧ୍ୟରୁ ଦ୍ୱାରଫିଟା ନୀତି ହେଉଛି ସର୍ବପ୍ରଥମ । ଠାକୁରମାନଙ୍କ ଦ୍ୱାରା ଫିଟା ନୀତି ତଥା ପରମ୍ପରା ସମ୍ପର୍କରେ ବିଭିନ୍ନ ପ୍ରାଚୀନ ଗ୍ରନ୍ଥରେ ସୁବିସ୍ତୃତ ବିବରଣୀ ରହିଅଛି । 'ଶ୍ରୀ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ସେବକ ଖଟଣୀ ନିଯୋଗ କର୍ମାଙ୍ଗୀ'ରେ ଦ୍ୱାରଫିଟା ନୀତି ଓ ଏଥିସହ ସମ୍ପୃକ୍ତ ପ୍ରମୁଖ ସେବକ ଭିତରଚ୍ଛ ମହାପାତ୍ରଙ୍କ ସମ୍ପର୍କରେ ଉଲ୍ଲେଖ ଅଛି ଯେ, ''ଏ ନିତ୍ୟ ଖୁରିକ ଠାରେ ଜଳଘଡ଼ି ନେଇ ସିଂହଦ୍ୱାର ଚଉକେ ସୂର୍ଯ୍ୟ ଦେଖି ସିଂହଦ୍ୱାର ଫିଟାଇବାକୁ ଆଜ୍ଞା ଦେବ; ତହୁଁ ଚାରିଦ୍ୱାର ପାଇକେ ଫିଟାଇବେ । ଲେଙ୍କା ଏମାନ ବଦଦୀବ । ଏ ଅନ୍ତେ ଜୟ ବିଜୟ ଦ୍ୱାର, କଳାଘାଟ ଦ୍ୱାର ମୁଦ, ଚକ୍ର ମୁଦ ଦେଖି ଏମାନଙ୍କୁ ଭାଙ୍ଗି ଦୁଆର ଫିଟାଇବ । ଆପଣେ ଶୋଧ ଦେଖିଯିବ xxxxx xxxx''

ଦାରୁ ବିଗ୍ରହ ପରଂବ୍ରହ୍ମଙ୍କର ଦେନନ୍ଦିନ ନୀତି କିପରି ସମାପନ ହେବ ତାହା ସୂତ ସଂହିତା ଅନ୍ତର୍ଗତ ନୀଳାଦ୍ରି ମହୋଦୟ ଗ୍ରନ୍ଥରେ ଉଲ୍ଲେଖ ହୋଇଛି, ଯଥା -

''ସ୍ଥିତେ ଦଣ୍ଡ ତ୍ରୟେ ରାତ୍ର୍ୟାଃ ଶଙ୍ଖସ୍ୟ ନିଃସ୍ୱନୈସ୍ତଦା
ପୁରୋ ଦ୍ୱାରଂ ଦ୍ୱିଧା କାର୍ଯ୍ୟଂ ତାଡ଼ୟିତ୍ୱା ଶନୈଃ ଶନୈଃ ।''

ଅର୍ଥାତ୍ ରାତ୍ର ଶେଷ ହେବାକୁ ତିନି ଦଣ୍ଡ ଥିବା ସମୟରେ ଶଙ୍ଖ ବଜାଇ ଧିରେ ଧିରେ ଦ୍ୱାର ଫିଟାଇବ । ୧ ଦଣ୍ଡ ୨୪ ମିନିଟ୍ ଅଟେ । ତିନି ଦଣ୍ଡ ସମାନ ୧ ଘଣ୍ଟା ୧୨ ମିନିଟ୍ ଅଟେ । ଅର୍ଥାତ୍ ସୂର୍ଯ୍ୟ ଉଦୟର ୧ ଘଣ୍ଟା ୧୨ ମିନିଟ୍ ପୂର୍ବରୁ ଦ୍ୱାର ଫିଟିବା ଉଚିତ୍ ।

ଅପର ପକ୍ଷରେ ବହୁ ପ୍ରାଚୀନ ସମୟରୁ ପାଳିତ ହେଉଥିବା ଦ୍ୱାର ଫିଟା ନୀତି ସମ୍ପର୍କରେ ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶଙ୍କ ଲିଖିତ "ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ" ପୁସ୍ତକର ୨୧୯ ପୃଷ୍ଠାରେ ଉଲ୍ଲେଖ ଅଛି ଯେ, "× × × ପ୍ରତିଦିନ ରାତ୍ର ଏକ ପ୍ରହର ଥାଇ ଠାକୁରମାନଙ୍କ ନିଦ୍ରାଭଙ୍ଗ କରାଇବାକୁ ହେବ । ଚାରି ଶଙ୍ଖ, ମହୁରୀ, ବୀଣା, ଭାଟ, ତାଳ, ଶିଙ୍ଗା, ଘଣ୍ଟା, ଭେରୀ, ମୃଦଙ୍ଗ ଓ କମ ଏପରି ୧୬ ଶବ୍ଦ ହେଲା ପରେ ଗମ୍ଭୀରା ଦ୍ୱାର କବାଟ ଫିଟାଇବା ପାଇଁ ପରିଛା, ପରକରଣ, ମୁଦିରଥ, ଶ୍ରୋତୀୟ ବ୍ରାହ୍ମଣ, ପାଳିଆ ପଣ୍ଡା, ସିଂହାର ପଶୁପାଳକ, ଅଖଣ୍ଡ ମେକାପ, ବାହାର ଗରାବଡୁ, ଭିତର ଗରାବଡୁ, ଶ୍ରୀମୁଖ ସିଂହାରୀ, ଭିତର ସୁନା ଦିହୁଡ଼ି ସେବକ, ପତ୍ରିବଡୁ, ଭିତର ଭଣ୍ଡାର ମେକାପ, ଫାରେକ ମୁଦୁଲି, ଜ୍ୟୋତିଷ, ପାତ୍ର, ଦରପଣିଆ, ଖଟଣି ସମସ୍ତ ସେବକ ଥାଇ ମୁଦ ଦେଖି ମୁଦ ଭାଙ୍ଗି କବାଟ ଫିଟାଇବ । ପାଦ ପ୍ରକ୍ଷାଳନ କରି ସେବକମାନେ ଭିତରେ ପ୍ରବେଶ କରିବେ । × × ×"

ଉପରୋକ୍ତ ବର୍ଣ୍ଣିତ ନୀତି ତଥା ପରମ୍ପରାରେ ବର୍ତ୍ତମାନ ସାମାନ୍ୟ ପରିବର୍ତ୍ତନ ଘଟିଅଛି । ୧୯୫୨ ମସିହାରେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ ଏକ ସ୍ୱତନ୍ତ୍ର ଆଇନ ବଳରେ ଶ୍ରୀମନ୍ଦିର ନୀତି, ଯାନିଯାତ୍ରା, ଉତ୍ସବ ଇତ୍ୟାଦି ଲିପିବଦ୍ଧ କରାଯାଇ "ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ତ୍ୱଲିପି" (Sri Jagannath Temple Record of Rights) ନାମରେ ଏକ ପୁସ୍ତକ ୧୯୫୫ ମସିହାରେ ପ୍ରବର୍ତ୍ତିତ ହୋଇଥିଲା । ତେବେ ରାଜ୍ୟ ସରକାର ୧୯୬୦ ମସିହା ଠାରୁ ବିଧିବଦ୍ଧ ଭାବରେ ଶ୍ରୀମନ୍ଦିରର ପରିଚାଳନା ଭାର ନେଇଥିଲେ ଏବଂ ସେହିଦିନ ଠାରୁ ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ତ୍ୱଲିପି ପ୍ରକାରେ ଶ୍ରୀମନ୍ଦିରରେ ଶ୍ରୀବିଗ୍ରହମାନଙ୍କର ଯାବତୀୟ ନୀତି, ଉତ୍ସବାଦି ପାଳିତ ହୋଇ ଆସୁଅଛି । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ତ୍ୱଲିପିରେ ଦ୍ୱାରଫିଟା ନୀତି ସମ୍ପର୍କରେ ଉଲ୍ଲେଖ ହୋଇଥିବା ଅବିକଳ ତଥ୍ୟ ନିମ୍ନରେ ସୂଚୀତ କରାଗଲା । "ପୂର୍ବରାତ୍ର ଠାକୁରଙ୍କ ପହୁଡ଼ ପରେ ମନ୍ଦିର ଭିତର ଓ ବାହାର ଶୋଧ ହୋଇ ଭିତର ଛାମୁଦୁଆର (କଳାହାଟ ଦ୍ୱାର) ଓ ଜୟ ବିଜୟ ଦ୍ୱାର ବନ୍ଦ ହୋଇ ତାଲା ପଡ଼ି ମାଟିର ମୁଦ ଦିଆଯାଇଥାଏ । ଏଥି ସହିତ ସିଂହଦ୍ୱାର, ପଶ୍ଚିମ ଦ୍ୱାର, ଦକ୍ଷିଣ ଦ୍ୱାର ଓ ଉତ୍ତର ଦ୍ୱାର ମଧ୍ୟ ବନ୍ଦ ହୋଇଥାଏ । ପ୍ରତ୍ୟେକ ଦ୍ୱାରର ବରକନ୍ଦାଜ (ପହରାବାଲା) ଜଗି ରହିଥାନ୍ତି । ଭୋରରୁ ପହରାବାଲାମାନେ ଚାରିଆଡ଼େ ବୁଲି ଦେଖି ସାରିବା ପରେ ଚାରି ମୁଖ୍ୟ ଦ୍ୱାର କବାଟରେ ଥିବା ଚୋରା କବାଟମାନ ସେବକମାନଙ୍କ ଯିବା ଆସିବା ପାଇଁ ଖୋଲାଯାଏ । ଭୋରରୁ ପ୍ରତିହାରୀ, ଭିତରଛ ମହାପାତ୍ର, ମୁଦୁଲି, ଅଖଣ୍ଡ ମେକାପ ଓ ପାଳିଆ ମେକାପ ଦୁଆର ଫିଟାଇବାକୁ ଆସନ୍ତି । ଏମାନେ ଭିତର ଦକ୍ଷିଣ ଦ୍ୱାର ନିକଟରେ ରହନ୍ତି । ଭିତରଛ ମହାପାତ୍ର ମନ୍ଦିରର ଭିତର ବେଢ଼ାକୁ ଆସିଲେ ବାହାର ବେଢ଼ାର ଚାରି ଦୁଆରର (ସିଂହଦ୍ୱାର, ପଶ୍ଚିମ ଦ୍ୱାର, ଉତ୍ତର

ଦ୍ୱାର ଓ ଦକ୍ଷିଣ ଦ୍ୱାର) କବାଟମାନ ଖୋଲାଯାଏ । ଉପରୋକ୍ତ ୫ ଜଣ ସେବକ ଜୟ ବିଜୟ ଦ୍ୱାର ନିକଟକୁ ଯାଇ ସେହି ଦ୍ୱାରରେ ଦିଆ ଯାଇଥିବା ମୁଦ ଯାଞ୍ଚ କରନ୍ତି । ତା'ପରେ ମୁଦୁଲି ଚାବି ଆଣି ଦ୍ୱାର ଖୋଲିଲେ ଏମାନେ ଭିତରକୁ ଯାଆନ୍ତି ଓ ଜୟ ବିଜୟ ଦ୍ୱାର ଭିତର ପାଖରୁ ବନ୍ଦ ହୁଏ । (ତାଲାରେ ଦିଆ ଯାଇଥିବା ମୁଦ ତଳିଛ ମହାପାତ୍ରଙ୍କ ପାଖରେ ଥାଏ ।) ଏହି ସେବକମାନେ ଭିତରେ ପ୍ରବେଶ କରି ଛାମୁ ଦୁଆର ଓ କଳାହାଟ ଦ୍ୱାରକୁ ଯାଆନ୍ତି । ତହିଁରେ ପୂର୍ବ ରାତ୍ରରେ ପଡ଼ିଥିବା ତାଲା ଓ ମୁଦ ଯାଞ୍ଚ କରନ୍ତି । ଏଥିପାଇଁ ପ୍ରତିହାରୀଙ୍କୁ ଗୋଟିଏ ବଇଠା ଦିଆଯାଏ । ଯାଞ୍ଚ ପରେ ପ୍ରତିହାରୀ ''ମଣିମା'' ଡାକ ଦିଅନ୍ତି । ଛାମୁ ଦୁଆର ଖୋଲା ହୁଏ । ଅଖଣ୍ଡ ଓ ପାଳିଆ ମେକାପ ବଇଠା ଧରି ଠାକୁରଙ୍କୁ ଦେଖନ୍ତି ଓ ୯ଟି ପିତଳ ବଇଠା ଜାଳନ୍ତି । ଏହା ରାଶି ତେଲରେ ଜଳାଯାଏ । ଏହାପରେ ଜୟ ବିଜୟ ଦ୍ୱାର ଭିତର ପାଖରୁ ଅଳ୍ପ ଖୋଲା ହୁଏ । ଖଟଶେଯ ମେକାପ, ପାଳିଆ ସୁଆରବଡୁ, ଗରାବଡୁ ଓ ଖୁଣ୍ଟିଆ ଭିତରକୁ ଯାଆନ୍ତି । ଖଟଶେଯ ମେକାପମାନେ ରତ୍ନ ପଲଙ୍କ ଉଠାଇ ପଲଙ୍କ ଘରକୁ ନିଅନ୍ତି । ଭିତର କାଠ ଅର୍ଗଳି ଯାହା ରାତ୍ରରେ ଖୋଲା ହୋଇଥାଏ ତାହା ଲଗା ହୁଏ । ଏହାପରେ ଜୟ ବିଜୟ ଦ୍ୱାର ଓ ଭିତର ଦକ୍ଷିଣ ଦ୍ୱାର ସମ୍ପୂର୍ଣ୍ଣ ରୂପେ ଖୋଲା ହୁଏ ।''

ଶ୍ରୀଜଗନ୍ନାଥ ମନ୍ଦିର ତରଫରୁ ମୁଦ୍ରିତ ''ଶ୍ରୀଜଗନ୍ନାଥ ମନ୍ଦିର ଦୈନନ୍ଦିନ ପଞ୍ଜିକା''ରେ ଦ୍ୱାରଫିଟା ନୀତିର ସମୟ ଭୋର ୫ ଘଣ୍ଟା ବୋଲି ଉଲ୍ଲେଖ ରହିଛି । ସାଧାରଣ ଦିବସମାନଙ୍କ ବ୍ୟତୀତ କେତେକ ବିଶିଷ୍ଟ ପର୍ବଦିନ ମାନଙ୍କରେ ଯଥା ଦଶହରା ପର ଆଶ୍ୱିନ ଶୁକ୍ଳ ଏକାଦଶୀ ଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ, ଧନୁ ସଂକ୍ରାନ୍ତି ଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ (ପହଲି ଭୋଗ ମାସ)ରେ ଦ୍ୱାରଫିଟା ରାତି ୨ଟା ୩୦ ମିନିଟ୍‌ରୁ ୩ଟା ଭିତରେ କରାଯାଏ । କୌଣସି ଅସୁବିଧାବଶତଃ ଯଦି ପୂର୍ବ ରାତ୍ରରେ ଠାକୁରମାନଙ୍କ ପହୁଡ଼ ହୋଇପାରି ନଥିଲେ, ଦ୍ୱାରଫିଟା ନୀତିର ପ୍ରଶ୍ନ ଉଠେ ନାହିଁ । ଉକ୍ତ ଦିନ କେବଳ ''ମଙ୍ଗଳ ଆଳତି''ଠାରୁ ନୀତି ଆରମ୍ଭ ହୋଇଥାଏ ।

ସାଧାରଣତଃ ଦ୍ୱାରଫିଟା ନୀତି ପାଇଁ ପାଞ୍ଚଜଣ ସେବକଙ୍କ ଉପସ୍ଥିତି ଆବଶ୍ୟକ ପଡ଼ିଥାଏ । ସେମାନେ ହେଲେ ଭିତରଛ ମହାପାତ୍ର, ପ୍ରତିହାରୀ, ମୁଦୁଲି, ଅଖଣ୍ଡ ମେକାପ ଓ ପାଳିଆ ମେକାପ । ଦ୍ୱାରଫିଟା ନୀତି ସମ୍ପୃକ୍ତ ସେବକମାନେ ଜୟ ବିଜୟ ଦ୍ୱାର ଦେଇ ଶ୍ରୀମନ୍ଦିରର ମୁଖଶାଳା ମଧ୍ୟକୁ ପ୍ରବେଶ କରନ୍ତି ଏବଂ ଭିତରୁ ଦ୍ୱାର ବନ୍ଦ କରି ଦିଆଯାଏ । ପୂର୍ବ ବର୍ଣ୍ଣିତ ବିଧିରେ କଳାହାଟ ଦ୍ୱାର ଖୋଲାଯାଏ । ପ୍ରତିହାରୀ ମଣିମା ଡାକ ଦେବା ପରେ ଶ୍ରୀଅଙ୍ଗରୁ ଯଦି ଆକସ୍ମିକ ମାଳ, ଫୁଲ କିମ୍ବା ବସ୍ତ୍ର ଖସି ପଡ଼ିଥିବ, ତେବେ ମେକାପଙ୍କୁ ଜଣାଇ ଭିତରଛ ମହାପାତ୍ର ସିଂହାସନ ଉପରକୁ ଉଠି ସେ ସମସ୍ତ ପୂର୍ବପରି ଲାଗି (ସଜାଇବା) କରାଇବେ । ଯଦି ଗଭା ଖସି ପଡ଼ିଥାଏ, ମହାପ୍ରଭୁଙ୍କ ଅଙ୍ଗର ହୋଇଥିଲେ

ମେକାପଙ୍କ ଦ୍ୱାରା ରାଜାଙ୍କ ନହରକୁ ପଠାନ୍ତି । ବଡ଼ ଠାକୁରଙ୍କର ହୋଇଥିଲେ, ବିମଳାଙ୍କ ପାଖକୁ ପଠାନ୍ତି । ସୁଭଦ୍ରାଙ୍କ ଅଙ୍ଗର ହେଲେ ଗରୁଡ଼ଙ୍କ ନିକଟକୁ ପଠାନ୍ତି । ସିଂହଦ୍ୱାର କବାଟ ଖୋଲା ହେବାପରେ ବଡ଼ ଛତା ମଠର ସାଧୁ, ସନ୍ଥ ତଥା ଭକ୍ତ ମଣ୍ଡଳୀ ନାଟ ମନ୍ଦିରରେ (ବର୍ତ୍ତମାନ ''ଜଗମୋହନ'' ନାମରେ କଥିତ) ଉପସ୍ଥିତ ହୋଇ ପାରମ୍ପରିକ ସଙ୍ଗୀତ ଯଥା ''ରାମକୃଷ୍ଣ ଦାମୋଦର ପ୍ରଭୁ ମାଧବ ମଧୁସୂଦନ'', ''ଜୟ ଗୋବିନ୍ଦଂ ଜୟ ଗୋପାଳଂ'', ''କେଶବ ମାଧବ ରାମ ଦୟାଳ'' ପ୍ରଭୃତି ଗାନ କରାଯାଏ । ଖଟଶେଯ ଘର ମେକାପ ଖଟ ବିଜେ କରାଇ ନେବା ପରେ ଗମ୍ଭୀରାର ସମ୍ମୁଖ ଓ ଦକ୍ଷିଣ ଦ୍ୱାର ଖୋଲା ହୁଏ । ଏହାପରେ ଜୟ ବିଜୟ ଦ୍ୱାର ଖୋଲିବା ମାତ୍ରେ ବାଜା ବନ୍ଦ ହୁଏ ଏବଂ ହରିବୋଲ, ହୁଳହୁଳି, ପ୍ରାର୍ଥନା ଶବ୍ଦରେ ଶ୍ରୀମନ୍ଦିର ଜଗମୋହନ ପ୍ରକମ୍ପିତ ହୋଇଥାଏ । ସୂଚନାଯୋଗ୍ୟ ଯେ, ପହିଲି ଭୋଗ ମାସରେ ମନ୍ଦିରର ଜଗମୋହନରେ ବାଜା ନ ବାଜି କେବଳ ମଣିମା ଡାକରେ ଦୁଆର ଫିଟେ ଓ ପଲଙ୍କ ଯଥା ସ୍ଥାନରେ ରଖାଯାଇ ଆଳତି ହୁଏ । ସେହିପରି ଅଣସର ବେଳେ ମଙ୍ଗଳ ଆଳତି ପୂର୍ବରୁ ଗାନ ବାଜଣା ହୁଏ ନାହିଁ ।

ମୁଖ୍ୟତଃ ଦ୍ୱାରଫିଟା ନୀତି ସମ୍ପୃକ୍ତ ସେବକମାନେ ଯଦି ଧାର୍ଯ୍ୟ ସମୟରେ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇ ନପାରନ୍ତି, ତେବେ ଠାକୁରମାନଙ୍କ ନୀତି ସମ୍ପାଦନାରେ ବିଳମ୍ବ ଘଟିଥାଏ । ଏଥିନିମନ୍ତେ ମନ୍ଦିର ପ୍ରଶାସନ ତରଫରୁ ସ୍ୱତନ୍ତ୍ରଭାବେ ଚର୍ଚ୍ଚା କର୍ମଚାରୀ (ମନ୍ଦିର ପୋଲିସ୍)ମାନେ ଉକ୍ତ ଦିନର ପାଳିଆ ସେବକ ମାନଙ୍କୁ ଯଥେଷ୍ଟ ସମୟ ପୂର୍ବରୁ ଦ୍ୱାର ଦ୍ୱାର ବୁଲି ଅବଗତ କରାଇଥାନ୍ତି । ଦ୍ୱାରଫିଟା ନୀତି ପରେ ଶ୍ରୀବିଗ୍ରହମାନଙ୍କର ଅନ୍ୟାନ୍ୟ ନୀତି ପାଳିତ ହୋଇଥାଏ ।



# ମଙ୍ଗଳ ଆଳତି

ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ମଙ୍ଗଳମୟ ଶ୍ରୀବିଗ୍ରହଙ୍କ ଉଦ୍ଦେଶ୍ୟରେ ହେଉଥିବା ଆଳତିକୁ "ମଙ୍ଗଳ ଆଳତି" କୁହାଯାଇଥାଏ । ଅପରପକ୍ଷରେ ଭୋରରୁ ପ୍ରଥମ ବନ୍ଦାପନା ଶ୍ରୀବିଗ୍ରହଙ୍କ ଠାରେ ହୋଇଥାଏ । ଏହାକୁ ମଙ୍ଗଳ ଆଳତି କୁହାଯାଏ । ବାସ୍ତବିକ୍ ଏହି ଆଳତି ସମସ୍ତଙ୍କ ପାଇଁ ମଙ୍ଗଳଦାୟକ । ଡଃ ସିଦ୍ଧେଶ୍ୱର ମହାପାତ୍ରଙ୍କ "ପୁରୀ ବୋଲି" ପୁସ୍ତକର ୩୦୧ ପୃଷ୍ଠାରେ ମଙ୍ଗଳ ଆଳତି ସମ୍ପର୍କରେ ବର୍ଣ୍ଣିତ ଅଛି ଯେ, "ମଙ୍ଗଳ ଆଳତି" ଅର୍ଥ ଠାକୁରଙ୍କ ନିଦ୍ରା ତ୍ୟାଗ ପରେ କରାଯାଉଥିବା ଆଳତି । ପ୍ରାତଃକାଳୀନ ଏହି ଆଳତି ମଙ୍ଗଳକାରିଣୀ ବୋଲି କଳ୍ପିତ । ଭାରତର ବିଭିନ୍ନ ସୁପ୍ରତିଷ୍ଠିତ ମନ୍ଦିରମାନଙ୍କରେ ଅନୁଷ୍ଠିତ ହେଉଥିବା "ମଙ୍ଗଳ ଆଳତି" ପରି ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ମଙ୍ଗଳ ଆଳତି ଭିନ୍ନ ଧରଣର ଓ ସ୍ୱତନ୍ତ୍ର ଅଟେ । ପ୍ରତ୍ୟେକ ଦିନ ପୂର୍ବ ରାତ୍ର ପହୁଡ଼ ପୂର୍ବରୁ ଠାକୁରମାନେ ନାନାଦି ପୁଷ୍ପମାଲ୍ୟ, ଗୀତ ଗୋବିନ୍ଦ ଖଣ୍ଡୁଆ ପାଟ ଇତ୍ୟାଦି ପରିହିତ ପୂର୍ବକ ବଡ଼ ସିଂହାର ବେଶରେ ବିଭୂଷିତ ହୋଇଥାନ୍ତି । ଏହି ବେଶ ଥାଇ ତତ୍‌ପରଦିନ ଦ୍ୱାର ଫିଟା ନୀତି ସରିବା ପରେ "ମଙ୍ଗଳ ଆଳତି" ହୋଇଥାଏ । ମନ୍ଦିରର ଦୈନିକ ପଞ୍ଜିକା ପ୍ରକାରେ ଏହି ନୀତି ସକାଳ ୬ ଘଣ୍ଟା ସମୟରେ ହେବା ଆବଶ୍ୟକ ।

ଶ୍ରୀମନ୍ଦିରର ମୁଖ୍ୟ ବିଗ୍ରହମାନଙ୍କ ଦୈନନ୍ଦିନ ନୀତି ସମ୍ପର୍କରେ ୧୮୦୫ ଖ୍ରୀ.ଅ.ରେ ପୁରୀର କଲେକ୍ଟର ଗ୍ରୋମ୍ ସାହେବ ତାଙ୍କ ରିପୋର୍ଟରେ ୩ ନଂ ତାଲିକାରେ ପ୍ରାଦେଶିକ କମିଶନର ଥୋମାସ୍ ଫୋରେଷ୍ଟସ୍ କ୍ୟୁଙ୍କ ନିକଟକୁ ଲେଖିଥିବା ତଥ୍ୟ ଅନୁଯାୟୀ "× × × Mungala Auruty is begun when two hours of the night remains × × ×"

ସାଧାରଣତଃ ପ୍ରତିଦିନ ରତ୍ନସିଂହାସନସ୍ଥ ଶ୍ରୀବିଗ୍ରହମାନଙ୍କ ଉଦ୍ଦେଶ୍ୟରେ ଦୁଇଥର ଆଳତି ହୋଇଥାଏ । ଯଥା, (୧) ମଙ୍ଗଳ ଆଳତି, (୨) ସନ୍ଧ୍ୟା ଆଳତି । କିନ୍ତୁ ପ୍ରକୃତପକ୍ଷେ ମହାପ୍ରଭୁମାନଙ୍କର ଦିବସ ମଧ୍ୟରେ ମୋଟ୍ ଛଅ ଥର ଆଳତି ହୋଇଥାଏ । ନିମ୍ନରେ ଏହି ଆଳତିଗୁଡ଼ିକ ଉଲ୍ଲେଖ କରାଗଲା ।

(୧) ମଙ୍ଗଳ ଆଳତି- କର୍ପୂର, ୨୧ ବତୀ, ପିଠଉ ଆଳତି (ଭିତରଚ୍ଛ, ପାଳିଆ, ପୁଷ୍ପାଳକମାନଙ୍କ ଦ୍ୱାରା)

(୨) ସକାଳ ଧୂପ ଆଳତି- କର୍ପୂର, ୨୧ ବତୀ (ପୂଜାପଣ୍ଡାମାନଙ୍କ ଦ୍ୱାରା)

(୩) ମଧ୍ୟାହ୍ନ ଧୂପ ଆଳତି- କର୍ପୂର, ୨୧ ବତୀ ( " )

(୪) ସନ୍ଧ୍ୟା ଆଳତି- କର୍ପୂର, ୨୧ବତୀ, ପିଠଉ ଆଳତି (ତଳିଚ୍ଛ, ପାଳିଆ ପୁଷ୍ପାଳକ)

(୫) ସନ୍ଧ୍ୟା ଧୂପ ଆଳତି- କର୍ପୂର, ୨୧ ବତୀ, (ପୂଜାପଣ୍ଡାଙ୍କ ଦ୍ୱାରା)

(୬) ପହୁଡ଼ ଆଳତି- କର୍ପୂର, ପିଠଉ ଆଳତି (ପୁଷ୍ପାଳକଙ୍କ ଦ୍ୱାରା)

"ମଙ୍ଗଳ ଆଳତି" ସମ୍ପର୍କରେ ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ବର୍ଣ୍ଣିତ ଅଛି ଯେ, "ପାଳିଆ ପଶୁପାଳକ (ପୁଷ୍ପାଳକ) ୩ ଜଣ ଆସନ୍ତି । (ଭିତରଚ୍ଛ ମହାପାତ୍ର ଶ୍ରୀଜଗନ୍ନାଥଙ୍କ ମଙ୍ଗଳ ଆଳତି କରିବାକୁ ଅଧିକାରୀ ଅଟନ୍ତି । ସେ ଯଦି କୌଣସି କାରଣରୁ ଆସି ନପାରନ୍ତି, ତେବେ ତଳିଚ୍ଛ ମହାପାତ୍ର ତାଙ୍କ କାମ କରନ୍ତି ।) ପାଳିଆ ମେକାପ ତିନି ଗୋଟି କର୍ପୂର ଆଳତି ଦାନି ତିନି ଠାକୁରଙ୍କ ସାମନାରେ ରଖନ୍ତି । ଗରାବଡୁ ୩ ଜଣଙ୍କୁ ହାତ ଧୋଇବାକୁ ଝରିରେ ପାଣି ଦିଅନ୍ତି । ପୁଷ୍ପାଳକମାନେ ଓ ଭିତରଚ୍ଛ ମହାପାତ୍ର ହାତ ଧୋଇଲା ପରେ ପାଳିଆ ମେକାପ କର୍ପୂର ଆଳତି ଲଗାଇ ଦିଏ ଓ ଉକ୍ତ ୩ ଜଣ ସେବକ ଆଳତି କରନ୍ତି । କର୍ପୂର ଆଳତି ପରେ ସୁଆରବଡୁ ୨୧ ବତୀ ଆଳତି ବଇଠାରେ ୨୧ ଗୋଟି ଘିଅବତୀ ସଜାଡ଼ି ୩ ଠାକୁରଙ୍କ ସାମନାରେ ରଖେ । ଗରାବଡୁ ହାତ ଧୋଇବାକୁ ପାଣି ଦିଏ । ତିନିଜଣ ସେବକ ତିନି ଠାକୁରଙ୍କର ପିଠଉବତୀ ଆଳତି କରନ୍ତି । ଏହା ପରେ ସୁଆରବଡୁ ୩ ଗୋଟି ଥାଳିରେ ପିଠଉ ବଟା ଓ ବତୀ ସଜାଡ଼ି ଲଗାଇ ରଖନ୍ତି । ଗରାବଡୁ ହାତ ଧୋଇବାକୁ ପାଣି ଦିଅନ୍ତି । ତିନିଜଣ ଯାକ ସେବକ ତିନି ଠାକୁରଙ୍କର ପିଠଉବତୀ ଆଳତି କରନ୍ତି । ଆଳତି ଶେଷରେ କର୍ପୂରର ଅବଶିଷ୍ଟାଂଶ ଓ ପିଠଉ ପ୍ରସାଦ ସ୍ୱରୂପ ବଣ୍ଟାଯାଏ । ଏହି ନୀତି ବର୍ଷର ୩୬୫ ଦିନ ଏହିପରି ଭାବରେ ହୁଏ । ଆଳତି ବେଳେ ସର୍ବସାଧାରଣ ଭିତର କାଠ ଅର୍ଗଳ ପାଖରେ ରହି ଦର୍ଶନ କରନ୍ତି । ରତ୍ନବେଦୀ ନିକଟକୁ ଯାଇ ଦର୍ଶନ କରିବାକୁ ଇଚ୍ଛା କଲେ ପରିମାଣିକ ଦେବାକୁ ପଡ଼େ । ଆଳତି ପରେ ଠାକୁରଙ୍କ ମଇଲମ ହୁଏ ।"

ମଙ୍ଗଳ ଆଳତି ନୀତି ସହ ସମ୍ପୃକ୍ତ ସେବକମାନେ ହେଲେ ଭିତରଚ୍ଛ ମହାପାତ୍ର, ପାଳିଆ ପୁଷ୍ପାଳକ, ଗରାବଡୁ, ସୁଆରବଡୁ ଓ ପାଳିଆ ମେକାପ । ଏହି ନୀତି ତ୍ୱରାନ୍ୱିତ ସକାଶେ ଶ୍ରୀମନ୍ଦିରର ଚର୍ଚ୍ଚା (ପୋଲିସ୍) କର୍ମଚାରୀମାନେ ପାଳିଆ ସେବକମାନଙ୍କ ଘରକୁ ଯାଇ ସ୍ମରଣ କରାଇବା ସଙ୍ଗେ ସଙ୍ଗେ ନୀତିରେ ଆବଶ୍ୟକ ପଡୁଥିବା ଜିନିଷାଦିମାନ ସମ୍ପୃକ୍ତ ସେବକମାନଙ୍କୁ ଯୋଗାଇଥାନ୍ତି । ମୁଖ୍ୟତଃ ଭିତରଚ୍ଛ ମହାପାତ୍ର ମହାପ୍ରଭୁ (ଜଗନ୍ନାଥ)ଙ୍କ ବାଡ଼ର ଆଳତି କରିଥାନ୍ତି ଓ ଅନ୍ୟ ଦୁଇଜଣ ପୁଷ୍ପାଳକ ସେବକ ଯଥାକ୍ରମେ ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କ ଆଳତି କରିଥାନ୍ତି । ଏଠାରେ ସୂଚନାଯୋଗ୍ୟ ଯେ, ଭିତରଚ୍ଛ ମହାପାତ୍ର ମହାପ୍ରଭୁଙ୍କ ବାଡ଼ରେ ଆଳତି କରିବା ସହିତ ଶ୍ରୀସୁଦର୍ଶନ, ଶ୍ରୀମାଧବ, ଶ୍ରୀଦେବୀ ଓ ଭୂଦେବୀଙ୍କ ଆଳତି ମଧ୍ୟ କରିଥାନ୍ତି । ଏହି ପରମ୍ପରା ଏବେ ବି ଅକ୍ଷୁର୍ଣ୍ଣ ରହିଅଛି ।

କାର୍ତ୍ତିକ ମାସରେ ଓ ଧନୁ ସଂକ୍ରାନ୍ତି ଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ମଙ୍ଗଳ ଆଳତି ନିର୍ଦ୍ଧାରିତ ସମୟଠାରୁ ଶୀଘ୍ର ହୋଇଥାଏ । ଏଥିପାଇଁ ସ୍ୱତନ୍ତ୍ର ନୀତି ନିର୍ଘଣ୍ଟ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପ୍ରସ୍ତୁତ ହୋଇ ନୀତି ସଂପୃକ୍ତ ପାଳିଆ ଓ ସେବାୟତ ନିଯୋଗର କର୍ମକର୍ତ୍ତାଙ୍କ ନିକଟକୁ ପଠା ଯାଇଥାଏ । ଏତଦ୍‌ବ୍ୟତୀତ ଅଣସର ସମୟରେ ବାଜା ନ ବାଜି ପଟି ଦିଅଁଙ୍କ ଠାରେ ମଙ୍ଗଳ ଆଳତି ହୋଇଥାଏ ।

ମଙ୍ଗଳ ଆଳତି ନିମନ୍ତେ ସ୍ୱତ୍ୱଲିପିରେ ବର୍ଣ୍ଣିତ ହୋଇଥିବା ତଥ୍ୟ ଅନୁଯାୟୀ "ପ୍ରତିଦିନ ରାଜା ସୁପରିଣ୍ଟେଣ୍ଡେଣ୍ଟ ଅଧ ଭରିଏ ଭୀମସେନ କର୍ପୂର ଯୋଗାନ୍ତି । ତାହା ଭଣ୍ଡାର ମେକାପ ପାଖରେ ଥାଏ । ଦିନ ତମାମ ଆଳତି ଓ ଅବକାଶ ଜଳରେ ବ୍ୟବହୃତ ହୁଏ । ରାଜା ସୁପରିଣ୍ଟେଣ୍ଡେଣ୍ଟ ତରଫରୁ ମଜୁରୀ ଦିଆଯାଇ ଚୁନାକୁଟା ଘରେ ଚୁନା କରାଯାଏ । ଆଳତି ସକାଶେ ଅଟା ବଟା (ଚାଉଳ ପିଠଉ) ସୁଆରବଡୁ ଜିମାରେ ରହେ । ପିଠଉ ରୂପା ବଟାରେ ରହି ଆଳତିରେ ବ୍ୟବହୃତ ହୁଏ । ଦିନଯାକ ଆଳତିରେ ଯେତେ ବଳିତା ଦରକାର ହୁଏ ତାହା କୁଣ୍ଡାଇବେଣ୍ଟ ସାହି ନାରାୟଣ ମେକାପଙ୍କ ସ୍ତ୍ରୀ ମାଗି ଦିବ୍ୟା ଯୋଗାଏ । ସେଥିପାଇଁ ସେ ରାଜା ସୁପରିଣ୍ଟେଣ୍ଡେଣ୍ଟଙ୍କ ଠାରୁ ମାସକୁ ଦରମା ୩ଟଙ୍କା ଓ ଦୈନିକ ଖେଇ ପାଏ । ପାଳିଆ ମେକାପଙ୍କ ନିକଟରେ ଘିଅ ରହିଥାଏ । ସେଥିରୁ ଆଳତି ହୁଏ ଓ ସେବକମାନେ ନିର୍ଦ୍ଧାରିତ ଅଂଶରେ ଘିଅ ପାଆନ୍ତି । ଆଳତି ବଇଠା ଓ ପାଣି ଝରି ମୁଦୁଲି ଯୋଗାଏ । "୧୯୬୦ ମସିହା ଠାରୁ ରାଜ୍ୟ ସରକାର ବିଧିବଦ୍ଧ ଭାବେ ଶ୍ରୀମନ୍ଦିରର ପରିଚାଳନାଭାର ଏକ କମିଟି ଉପରେ ନ୍ୟସ୍ତ କରିବା ଦିନ ଠାରୁ ରାଜା ସୁପରିଣ୍ଟେଣ୍ଡେଣ୍ଟଙ୍କ ବଦଳରେ ମନ୍ଦିର ପ୍ରଶାସନ ତରଫରୁ ଉପରୋକ୍ତ ଦ୍ରବ୍ୟ ଆଦି ଠିକ୍ ସମୟରେ ଯୋଗାଇ ଦିଆ ଯାଉଥିବା ଜଣାଯାଏ । ସଂପ୍ରତି ଗୋପୀନାଥ ସୁଆର ନାମରେ ଜନୈକ ବ୍ୟକ୍ତି ପ୍ରତ୍ୟହ ଅନୁଷ୍ଠିତ ହେଉଥିବା ସମସ୍ତ ଆଳତି ପାଇଁ ବଳିତା ଯୋଗାଇ ଆସୁଅଛନ୍ତି ଓ ଏଥିପାଇଁ ମନ୍ଦିର ପ୍ରଶାସନ ତରଫରୁ ସେ ଦୈନିକ ୨୦ ଟଙ୍କା ପାଉଛନ୍ତି । ସେହିପରି ରବାଡ଼ିଆ ସେବକ ଶ୍ରୀମନ୍ଦିର କୋଠ ଭୋଗ ଗୋଦାମରୁ ନିର୍ଦ୍ଦିଷ୍ଟ ପରିମାଣର ଚାଉଳ ନେଇ ତାକୁ ଚୁନାକୁଟା ଘରେ ଚୂନା କରିଥାନ୍ତି । ଏହି ଚାଉଳ ଚୂନା ବା ଛଟାଣ ସହିତ ଦହି ମିଶି 'ପିଠଉ ଆଳତୀ' ପ୍ରସ୍ତୁତ ହୋଇଥାଏ ।

'ମଙ୍ଗଳ ଆଳତି' ନୀତିରେ ସର୍ବପ୍ରଥମେ ଠାକୁରମାନଙ୍କ କର୍ପୂର ଆଳତି ହୋଇଥାଏ । ତତ୍ପରେ ଏକୋଇଶ ବତୀ ଆଳତି ଓ ଶେଷରେ ପିଠଉ ଆଳତି କରା ଯାଇଥାଏ । ପରମ୍ପରା ଅନୁଯାୟୀ ମଙ୍ଗଳ ଆଳତି ଦର୍ଶନ କରି ଦର୍ଶନାର୍ଥୀ, ସେବକ ତଥା ଭକ୍ତମାନେ ପିଷ୍ଟକ ଆଳତି ଓ ତୁଳସୀ ସେବା କରିଥାନ୍ତି । ପାଳିଆ ସେବକମାନେ ଏହି ପ୍ରସାଦ ଭକ୍ତମାନଙ୍କୁ ବିତରଣ କରିବା ସଙ୍ଗେ ମଙ୍ଗଳ ଆଳତି କର୍ପୂରକୁ ଆଖିରେ ଲଗାଇଥାନ୍ତି ।

ଜନସାଧାରଣ ତଥା ଯାତ୍ରୀମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମଙ୍ଗଳ ଆଳତି ଦର୍ଶନ କରିବା ପାଇଁ ରତ୍ନସିଂହାସନ ସମୀପକୁ ଯିବାପାଇଁ ଇଚ୍ଛା କଲେ ପରିମାଣିକ ଟିକେଟ୍ କିଣି ଭିତରକୁ ଯାଇପାରିବେ । ଏଥିନିମନ୍ତେ ମନ୍ଦିର ପ୍ରଶାସନ ତରଫରୁ ପ୍ରତ୍ୟହ ମଙ୍ଗଳ ଆଳତି ପୂର୍ବରୁ ମାଢ଼ଣାମଣ୍ଡପ ଠାରେ ପରିମାଣିକ ଟିକେଟ ବିକ୍ରୟ କରାଯାଏ । ସମ୍ପ୍ରତି ଏହି ଟିକେଟ୍‌ର ମୂଲ୍ୟ ୨୫ ଟଙ୍କା ରଖାଯାଇଅଛି । ଏତଦ୍‌ବ୍ୟତୀତ ନିୟମିତ ଦର୍ଶନ କରୁଥିବା ଦର୍ଶନାର୍ଥୀମାନଙ୍କର ସ୍ୱତନ୍ତ୍ର ଆବେଦନ କ୍ରମେ ବିଚାର କରାଯାଇ ରିହାତି ଦରରେ ଅର୍ଥାତ୍ ୫୦୦ ଟଙ୍କା ରଖାଯାଇ ମାସିକ "ମଙ୍ଗଳ ଆଳତି ପାସ୍" ଯୋଗାଇ ଦିଆ ଯାଇଥାଏ । ବର୍ତ୍ତମାନ ପ୍ରାୟ ୩୦ ଜଣ ମାସିକ ପାସ୍‌ଧାରୀ ଦର୍ଶନାର୍ଥୀ ନିୟମିତ ଭାବେ ଏହି ଆଳତି ଦର୍ଶନ କରୁଥିବା ଜଣାଯାଏ ।

କଥିତ ଅଛି, ପ୍ରତ୍ୟହ ମହାପ୍ରଭୁମାନଙ୍କ ମଙ୍ଗଳ ଆଳତି ଦର୍ଶନ କଲେ ଅଶେଷ କଲ୍ୟାଣ ସାଧିତ ହେବା ସହ ସମସ୍ତ ପାପ କ୍ଷୟ ହୋଇଥାଏ । ଏପରିକି ରୋଗ, ଶୋକ ମଧ୍ୟ ଦୂର ହୋଇଯାଏ ବୋଲି ସେବକ ତଥା ଭକ୍ତ ସମାଜରେ ଗଭୀର ବିଶ୍ୱାସ । ମଙ୍ଗଳ ଆଳତି ସମୟରେ ସମଗ୍ର ଦର୍ଶନାର୍ଥୀ, ସାଧୁ, ସନ୍ଥ, ଭକ୍ତମାନେ ଗରୁଡ଼ସ୍ତମ୍ଭ ଠାରୁ ରତ୍ନବେଦୀ ପର୍ଯ୍ୟନ୍ତ ଦଣ୍ଡାୟମାନ ହୋଇ ମଙ୍ଗଳମୟଙ୍କ ମଙ୍ଗଳ ଆଳତି ଦର୍ଶନ କରି ନିଜକୁ ପ୍ରଭୁଙ୍କ ନିକଟରେ ସମର୍ପଣ କରିବା ସଙ୍ଗେ ସଙ୍ଗେ ଆନନ୍ଦରେ ହରିବୋଲ, ଜୟ ଜଗନ୍ନାଥ, ହୁଳହୁଳି ଇତ୍ୟାଦି ଶବ୍ଦରେ ସମଗ୍ର ପରିବେଶ ଭକ୍ତି ଭାବରେ ନିମଜ୍ଜିତ କରିଥାନ୍ତି । ବାସ୍ତବିକ ଠାକୁରଙ୍କ ଶ୍ରୀମୁଖ ଦେଖିବା ପାଇଁ ଭକ୍ତମାନେ ଯେପରି ବ୍ୟଗ୍ର ହୋଇ ପଡ଼ନ୍ତି, ଠିକ୍ ସେହିପରି ପ୍ରଭୁ ଭକ୍ତମାନଙ୍କର ମୁଖ ଦର୍ଶନ କରି ସେମାନଙ୍କର ଦୁଃଖ ଓ ପାପ ହରଣ କରିଥାନ୍ତି ।



# ମଇଲମ ଓ ତଡ଼ପ ଲାଗି

ମଇଲମ ଏକ ପ୍ରାଚୀନ ଶବ୍ଦ । ଏହାର ଅର୍ଥ ବେଶ, ଅଳଙ୍କାର, ମାଳଚୂଳ ଆଦି କଢ଼ାଯିବା ବା ଓଲାଗି କରିବା । ଗୋଟିଏ ଦିବସର ବିଭିନ୍ନ ନୀତି ପରେ ଶ୍ରୀବିଗ୍ରହମାନଙ୍କର ମୋଟ ଛଅ ଥର ମଇଲମ ହୋଇଥାଏ । ତେବେ ଠାକୁରଙ୍କ ପ୍ରଥମ ମଇଲମ ମଙ୍ଗଳ ଆଳତି ପରେ ହୁଏ । ଏଥିରେ ପୂର୍ବରାତ୍ର ବଡ଼ ସିଂହାର ବେଶରେ ରତ୍ନସିଂହାସନାଧିଷ୍ଠିତ ବିଗ୍ରହମାନେ ପରିଧାନ କରିଥିବା ଗୀତ ଗୋବିନ୍ଦ ଖଣ୍ଡୁଆ ପାଟ, ବିଭିନ୍ନ ପ୍ରକାର ପୁଷ୍ପ ଅଳଙ୍କାର ଯଥା କରପଲ୍ଲବ, ନାକଚଣା, ଗୁଣା, ହୃଦପଲ୍ଲବ, ତୁଳସୀ ଓ ବିଭିନ୍ନ ସୁଗନ୍ଧିତ ପୁଷ୍ପମାଲ୍ୟ ଇତ୍ୟାଦି ଓଲାଗି କରା ଯାଇଥାଏ ।

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ 'ମଇଲମ' ସମ୍ପର୍କରେ ଉଲ୍ଲେଖ ହୋଇଥିବା ତଥ୍ୟ ଅନୁଯାୟୀ ଏହି ନୀତିର ନିର୍ଦ୍ଧାରିତ ସମୟ ପୂର୍ବାହ୍ନ (ସକାଳ) ୬ ଘଣ୍ଟା । ଅଥଚ ମନ୍ଦିର ପଞ୍ଜିକା ପ୍ରକାରେ ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ୬ ଘଣ୍ଟା ୩୦ ମିନିଟ୍ ଅଟେ । କିନ୍ତୁ ଯେଉଁଦିନ ମଙ୍ଗଳ ଆଳତି ଯେତେ ଶୀଘ୍ର ସରିବ, ସେତେ ଶୀଘ୍ର ମଇଲମ ହେବ । ଏହି ନୀତି ସକାଶେ ୪ ଖଣ୍ଡ ତଡ଼ପ, ୨ ଖଣ୍ଡ ଉତ୍ତରୀୟ ଓ ୧ ଖଣ୍ଡ ଖଣ୍ଡୁଆ ଆବଶ୍ୟକ ପଡ଼ିଥାଏ । ଏହି ସମସ୍ତ ଜିନିଷ ମନ୍ଦିର କର୍ତ୍ତୃପକ୍ଷ ଯୋଗାଇଥାନ୍ତି ଓ ଏହା ଚାଙ୍ଗଡ଼ା ଘରେ ଥାଏ । ସୂଚନାଯୋଗ୍ୟ ଯେ, ତିନୋଟି ତଡ଼ପର ଲମ୍ବା ଯଥାକ୍ରମେ ୧୮, ୧୬, ୧୪ ହାତ ବିଶିଷ୍ଟ ଓ ଚଉଡ଼ା ୫୬ ଇଞ୍ଚ ଅଟେ । ଏହି ସୂତା ବସ୍ତ୍ରର ରଙ୍ଗ ଧଳା ଓ ଧଡ଼ିର ରଙ୍ଗ କମଳା ଅଟେ । ସେହି ଉତ୍ତରୀୟର ଲମ୍ବା ୨୪ ହାତ ଓ ଓସାର ୨୮ ଇଞ୍ଚ ଅଟେ । ଏ ବସ୍ତ୍ରର ରଙ୍ଗ ଧଳା ଅଟେ ।

ଚାରି ଜଣ ସେବକମାନଙ୍କ ଦ୍ୱାରା ଏହି ନୀତି ସମ୍ପନ୍ନ ହୋଇଥାଏ । ଯଥା, (୧) ପୁଷ୍ପାଳକ ୩ ଜଣ (୨) ଖୁଣ୍ଟିଆ (୩) ଚାଙ୍ଗଡ଼ା ମେକାପ (୪) ଧୋବା । (ଏ ଧୋବା ପ୍ରକୃତ ଧୋବା ନୁହେଁ, ଜଣେ ବ୍ରାହ୍ମଣ ସେବକ ଅଟନ୍ତି ।)

ସାଧାରଣତଃ ମଙ୍ଗଳ ଆଳତି ନୀତି ପରେ ଭିତରଚ୍ଛ ମହାପାତ୍ର ଚାଲିଯାଆନ୍ତି । ତାଙ୍କ ସ୍ଥାନରେ ଜଣେ ପାଳିଆ ପୁଷ୍ପାଳକ ଓ ଆଗରୁ ଆଳତି କରିଥିବା ୨ ଜଣ ପୁଷ୍ପାଳକ ଏହିପରି ୩ ଜଣ ପାଳିଆ ସେବକ ସିଂହାସନ ଉପରକୁ ଉଠି ଠାକୁରମାନଙ୍କୁ ମୁଣ୍ଡିଆ ମାରି ଶ୍ରୀଅଙ୍ଗ ସ୍ପର୍ଶ କରିଥାନ୍ତି । ଏହି ସମୟରେ ଜଣେ ପାଳିଆ ଖୁଣ୍ଟିଆ ଉପସ୍ଥିତ ଥାଏ । ପୁଷ୍ପାଳକମାନେ ପ୍ରଥମେ ଠାକୁରମାନଙ୍କ ଶ୍ରୀଅଙ୍ଗରୁ ଫୁଲ ଓ ବସ୍ତ୍ର ଓଲାଗି କରିଥାନ୍ତି । ପରମ୍ପରା କ୍ରମେ ପ୍ରତ୍ୟେକ ମଇଲମ ବେଳେ ଯାହା ମାଳଚୂଳ ତୁଳସୀ ଓଲାଗି କରାଯାଏ

ତନ୍ମଧ୍ୟରୁ ଖୁଣ୍ଟିଆମାନେ ଅଧେ ଓ ପୁଷ୍ପାଳକମାନେ ଅଧେ ପାଇଥାନ୍ତି । ଓଲାଗି ହୋଇଥିବା ପୁଷ୍ପ ଅଳଙ୍କାର ଗୁଡ଼ିକ କେତେକ ନିର୍ଦ୍ଦିଷ୍ଟ ଠାକୁରାଣୀ ଓ ଅନ୍ୟଗୁଡ଼ିକ ସମ୍ପୃକ୍ତ ସେବକମାନେ ଜନସାଧାରଣମାନଙ୍କୁ ବିକ୍ରୟ କରିଥାନ୍ତି । ଏପରିକି ଠାକୁରଙ୍କ ଗୋଟିଏ ପଦକ (ପୁଷ୍ପ ଅଳଙ୍କାର) ସମୟେ ସମୟେ ଏକଶହ ଟଙ୍କାରେ ବିକ୍ରୟ ହୋଇଥାଏ । ଏତଦ୍‌ବ୍ୟତୀତ ଗଜପତି ମହାରାଜାଙ୍କ ଶ୍ରୀନହରକୁ ମଧ୍ୟ କେତେକ ମାଳଚୂଳ, ପଇଡ଼ ଇତ୍ୟାଦି ନିର୍ଦ୍ଦିଷ୍ଟ ଜିନିଷ ଡାଟ ଯାଏ । ଏହି ମଇଲମ ନୀତି ସମୟରେ ଚାଙ୍ଗଡ଼ା ମେକାପ ସେବକ ସିଂହାସନ ତଳେ ଚାଙ୍ଗଡ଼ା ଧରି ଠିଆ ହୋଇଥାଏ । ସେଥିରେ ଅବକାଶ ବା ସ୍ନାନ ସକାଶେ ତଡ଼ପ ଓ ଉତ୍ତରୀୟ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କ ପାଇଁ ଥାଏ । ଏସବୁ ଜଗମୋହନସ୍ଥିତ ଚାଙ୍ଗଡ଼ା ଘରେ ଥାଏ । ପୂର୍ବ ରାତ୍ର ବସ୍ତ୍ର, ପୁଷ୍ପ ଇତ୍ୟାଦି ବାହାରିବା ପରେ ଚାଙ୍ଗଡ଼ା ମେକାପ ଅବକାଶ ଉତ୍ତରୀୟ ୩ ଜଣ ପୁଷ୍ପାଳକଙ୍କୁ ଦିଅନ୍ତି । ଏହି ସମୟରେ ଖୁଣ୍ଟିଆ ସେବକ ଗୋଟିଏ ଖଣ୍ଡୁଆ ବସ୍ତ୍ର ଧରି ଶ୍ରୀଅଙ୍ଗ ରକ୍ଷା କରେ । ପୁଷ୍ପାଳକ ସେବକମାନେ ଠାକୁରମାନଙ୍କୁ ଏହି ସୂତା ବସ୍ତ୍ର ପିନ୍ଧାନ୍ତି ।

ପୂର୍ବ ରାତ୍ରର ସମସ୍ତ ବସ୍ତ୍ର ଚାଙ୍ଗଡ଼ା ମେକାପ ସେବକ ନେଇ ଚାଙ୍ଗଡ଼ା ଘରେ ରଖିଥାନ୍ତି । ତିନି ଠାକୁରଙ୍କୁ ତିନିଗୋଟି ତଡ଼ପ ଓ ସୁଦର୍ଶନଙ୍କୁ ଏକଗୋଟି ତଡ଼ପ ଲାଗି କରାଯାଏ । ଉତ୍ତରୀୟ ଦୁଇଗୋଟି ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କୁ ଲାଗି ବା ପିନ୍ଧା ଯାଏ । ଏହି ତଡ଼ପ ଉତ୍ତରୀୟ ପ୍ରତିଦିନ ଧୋବା (ଜନୈକ ବ୍ରାହ୍ମଣ ସେବକ) ଦ୍ୱାରା ବଟ ଗଣେଶଙ୍କ ପାଖରେ ଥିବା ଗୋଟିଏ ପଥର କୁଣ୍ଡରେ ଧୁଆ ହୋଇଥାଏ ।

ଏହିପରି ଭାବେ ଠାକୁରମାନଙ୍କର ମଇଲମ ଓ ତଡ଼ପ ଉତ୍ତରୀୟ ପରିଧାନ ନୀତି ଅନୁଷ୍ଠିତ ହୋଇଥାଏ ।



# ଅବକାଶ

ରତ୍ନସିଂହାସନାଧିଷ୍ଠିତ ଶ୍ରୀମହାପ୍ରଭୁମାନଙ୍କର ଦନ୍ତମାର୍ଜନ ଓ ସ୍ନାନବିଧିକୁ ''ଅବକାଶ'' କୁହାଯାଏ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ହୋଇଥିବା ଉଲ୍ଲେଖ ପ୍ରକାରେ ପ୍ରତ୍ୟହ ଠାକୁରଙ୍କର ପ୍ରଥମ ମଇଲମ ପରେ ଅବକାଶ ହୁଏ । ପୂର୍ବାହ୍ନ ୬ଟାରୁ ୬ଟା ୩୦ ମିନିଟ୍ ମଧ୍ୟରେ ଏହି ନୀତି ସମାପନ ହେବା ଆବଶ୍ୟକ । ଅପରପକ୍ଷରେ ବର୍ତ୍ତମାନ ପ୍ରଚଳିତ ଥିବା ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକାରେ ଅବକାଶ ନୀତିର ନିର୍ଦ୍ଧାରିତ ସମୟ ସକାଳ ୭ ଘଟିକା ବୋଲି ଉଲ୍ଲେଖ ଅଛି । ମାତ୍ର କେତେକ ସମୟରେ ଦ୍ୱାରଫିଟା ଓ ମଙ୍ଗଳ ଆଳତି ଇତ୍ୟାଦି ନୀତିରେ ବିଳମ୍ବ ଘଟିଲେ ସ୍ୱତଃ ଅବକାଶ ନୀତି ନିର୍ଦ୍ଧାରିତ ସମୟରେ ନ ହୋଇ ସାମାନ୍ୟ ବିଳମ୍ବରେ ହୋଇଥାଏ ।

ଅବକାଶ ନୀତି ପାଇଁ ଆବଶ୍ୟକ ଜିନିଷାଦ୍ ମଧ୍ୟରେ- (୧) ପିଢ଼ା, (୨) ପାଣି, (୩) ଖଟୁଳି, (୪) ମୁତୁରି ଦାନ୍ତକାଠି, (୫) ଜିଭଛେଲା, (୬) ୩ ଗୋଟି ବଟା, (୭) ଫୁଲ ଓ ତୁଳସୀ, (୮) ଚନ୍ଦନ, (୯) ଅଁଳା, (୧୦) କର୍ପୂର, (୧୧) ଦର୍ପଣ, (୧୨) ଗରା, (୧୩) ୩ ଗୋଟି ପିଙ୍ଗଣ, (୧୪) ଗୁଆଗୁଣ୍ଡ । ଉପରୋକ୍ତ ଉପକରଣ ସହିତ ନିମ୍ନଲିଖିତ ସେବକମାନଙ୍କ ଉପସ୍ଥିତି ଆବଶ୍ୟକ ପଡ଼ିଥାଏ । ଯଥା- ଭିତରଚ୍ଛ ମହାପାତ୍ର, ପାଳିଆ ପୁଷ୍ପାଳକ, ସୁଆରବଡୁ, ପାଣିଆପଟ, ମୁଖପଖାଳ ସେବକ, ଖଟୁଳି ସେବକ, ଦର୍ପଣିଆ, ଘଟୁଆରୀ, ଭଣ୍ଡାର ମେକାପ, ମହାଭୋଇ, ଜ୍ୟୋତିଷ ଖୁରି ନାଏକ ।

ଶ୍ରୀବିଗ୍ରହମାନଙ୍କର ମଙ୍ଗଳ ଆଳତି ଓ ମଇଲମ ସରି ତଡ଼ପ ଉତ୍ତରୀୟ ପରିଧାନ କରିବା ପରେ ପାଣିଆପଟ ଏକ ଗରା ପାଣି ଆଣି ଦିଏ । ସୁଆରବଡୁ ସେବକ ଉକ୍ତ ପାଣି ଭିତର ପୋଖରିଆରେ (ଭିତର ଗମ୍ଭୀରା) ପକାଇ ଧୋଇଥାନ୍ତି । ଏହାକୁ ଶ୍ରୀମନ୍ଦିର ଭାଷାରେ 'ଅବକାଶ ପାଇଁ ପାଣି ପଡ଼ିଲା' ବୋଲି କୁହା ଯାଇଥାଏ । ତତ୍ପରେ ସୁଆରବଡୁ ତିନି ଠାକୁର (ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା)ଙ୍କ ସାମନାରେ ଅର୍ଥାତ୍ ସିଂହାସନ ତଳେ ତଥା ଗମ୍ଭୀରାର ପ୍ରାୟ ମଧ୍ୟ ଭାଗରେ ତିନିଗୋଟି କାଠ ପିଢ଼ା ଆସନ ପକାଇଥାନ୍ତି । ଖଟୁଳି ସେବକ ତିନିଗୋଟି ଛୋଟ (ଉଚ୍ଚତା ୧ ଫୁଟ୍) ରୂପା ଖଟୁଳି ନେଇ ପିଢ଼ା ପାଖରେ ରଖିଥାନ୍ତି । ଏହାପରେ ମୁଖପଖାଳ ସେବକ ତିନିଗୋଟି ବଟା (ଥାଳି) ଓ ତିନୋଟି ପିଙ୍ଗଣ ସଜାଡ଼ି ତହିଁରେ ସୁବାସିତ ଫୁଲ, ତୁଳସୀ, ଚନ୍ଦନ ଓ ଅଁଳା ରଖନ୍ତି । ଏତଦ୍‌ବ୍ୟତୀତ ୩ ଖଣ୍ଡି ମୁତୁରୀ ଦାନ୍ତକାଠି (ପ୍ରାୟ ବାର ଅଙ୍ଗୁଳ ବିଶିଷ୍ଟ) ଓ ସ୍ୱର୍ଣ୍ଣର ଜିଭଛେଲା ଯଥାକ୍ରମେ ଗାରଦ ଓ ଭଣ୍ଡାର ମେକାପଙ୍କ ଠାରୁ ଆଣିଥାନ୍ତି । ଗରାବଡୁ ୩ ଗୋଟି ଝରି ତିନି ପିଢ଼ା ନିକଟରେ ରଖିଥାନ୍ତି । ଦର୍ପଣିଆ ସେବକ ଅଷ୍ଟଧାତୁ ନିର୍ମିତ ତିନିଗୋଟି ଦର୍ପଣ (ଏକ ସ୍ୱତନ୍ତ୍ର ଶୈଳୀରେ

ନିର୍ମିତ) ରଖନ୍ତି । ପାଣିଆପଟ ସେବକ ୩ ଗୋଟି ପିଢ଼ା ପାଖରେ ୩ ଗରା ପାଣି ଓ ଆଉ ଗୋଟିଏ ହାତୁଆଣି ପାଇଁ ଏପରି (୪ର୍ଥ) ଗରା ପାଣି ରଖେ ।

ସୂଚନାଯୋଗ୍ୟ ଯେ, ଅବକାଶ ନୀତି ପାଇଁ ଆବଶ୍ୟକ ଦ୍ରବ୍ୟ ମନ୍ଦିର ପ୍ରଶାସନ ଯୋଗାଇଥାଏ । ଯଥା- କର୍ପୂର, ଚନ୍ଦନ, ଅଁଳା, ମୁତୁରୀ ଦାନ୍ତକାଠି ଇତ୍ୟାଦି । କେବଳ ମହାଭୋଇ ଓ କେତେକ ଭକ୍ତ ଦହି ଯୋଗାଇଥାନ୍ତି । ଏଥିପାଇଁ ମହାଭୋଇ ସେବକ କୌଣସି ଅର୍ଥ ମନ୍ଦିର ପ୍ରଶାସନରୁ ଗ୍ରହଣ କରୁନଥିବା ଜଣାଯାଏ । ପୂର୍ବେ କେତେକ ନିର୍ଦ୍ଦିଷ୍ଟ ସେବକ ଠାକୁରମାନଙ୍କ ନିମିତ୍ତ ମୁତୁରୀ ଦାନ୍ତକାଠି ଯୋଗାଉଥିଲେ । ଗତ ଅନେକ ବର୍ଷ ଧରି ମନ୍ଦିର ପ୍ରଶାସନର ଖର୍ଚ୍ଚରେ ମନ୍ଦିର କର୍ମଚାରୀମାନେ ଓ ଭକ୍ତମାନେ ଦାନ ସୂତ୍ରରେ ନୟାଗଡ଼ ଜିଲ୍ଲାରୁ ଏହି ଦାନ୍ତକାଠି ସଂଗ୍ରହ କରି ଆଣୁଛନ୍ତି । ଘଟୁଆରି ସେବକ ଶ୍ରୀମନ୍ଦିର କାର୍ଯ୍ୟାଳୟରୁ ଅଁଳା ଓ ଚନ୍ଦନ ଆଣିଥାନ୍ତି ଓ ଅବକାଶ ନୀତି ପାଇଁ ଆବଶ୍ୟକ ଚନ୍ଦନ ଓ ଅଁଳା ଘୋରି ଯୋଗାଇଥାନ୍ତି । ଏଥିପାଇଁ ସେ ବାବଦକୁ ପାରିଶ୍ରମିକ ପାଇଥାନ୍ତି ।

ଅବକାଶ ନୀତି ସହ ଜଡ଼ିତ ମୁଖପଖାଳ ସେବକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଅଟେ । ଏ ସମ୍ପର୍କରେ ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, ‘‘ଠାକୁରଙ୍କ ଦୈନିକ ଅବକାଶ ସମୟରେ ଏ ସେବକ ମୁଦୁଲି ଠାରୁ ସହସ୍ର ନେଇ ଦାନ୍ତକାଠି ୩ ଖଣ୍ଡ ତିଆରି କରି ଓ ସୁନା ଜିଭି (ଜିଭଛେଲା) ନେଇ ପୁଷ୍ପାଳକଙ୍କୁ ଦିଅନ୍ତି । ୩ଟି ବଟାରେ ଫୁଲ ତୁଳସୀ ସଜାଡ଼ି ଯୋଗାନ୍ତି । ଘଟୁଆରୀ ଦେଇଥିବା ଚନ୍ଦନ, ଅଁଳା ଓ ମହାଭୋଇଙ୍କ ପ୍ରଦତ୍ତ ଦହି ଇତ୍ୟାଦି ପୂଜାରେ ବାଢ଼ନ୍ତି । ପିଙ୍ଗଣମାନଙ୍କରେ କର୍ପୂର ଜଳ ତିଆରି କରି ତିନି ବାଡ଼ରେ ଯୋଗାନ୍ତି । ଖଟୁଲି ଉପରେ ପାହାଡ଼ା (ଏକ ବସ୍ତ୍ର) ପକାନ୍ତି । ଦର୍ପଣିଆ ଦେଇଥିବା ଦର୍ପଣମାନ, ଝରି ପିଙ୍ଗଣ ପୂଜାକୁ ଯୋଗାନ୍ତି । ପାଣିଆପଟ ଆଣିଥିବା ପାଣି ନେଇ ଯୋଗାନ୍ତି ଓ ଆବଶ୍ୟକ ଦ୍ରବ୍ୟ ଇତ୍ୟାଦି ବଢ଼ାଇଥାନ୍ତି ।’’

ଦୈନିକ ଅବକାଶ ପୂଜା ଠା’ କରିବା ପରେ ଏହି ସେବକ ଭିତରଛ ମହାପାତ୍ର ଓ ଅନ୍ୟ ଦୁଇ ପାଳିଆ ପୁଷ୍ପାଳକଙ୍କୁ ପୂଜା ବସିବାକୁ ଡାକିଥାନ୍ତି । ଏହା ଶ୍ରୀମନ୍ଦିର ଭାଷାରେ ‘‘ପୂଜା ବସିବାକୁ ଓହ୍ଲେଇବା ହେଉ’’ ବୋଲି ତିନିଥର କହିଥାନ୍ତି । ଏହାଙ୍କ ଅନୁପସ୍ଥିତିରେ ପାଳିଆ ଖୁଣ୍ଟିଆ ଡାକିଥାନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ମୁଖପଖାଳ ସେବକ ନ ଡାକିବା ପର୍ଯ୍ୟନ୍ତ ଅବକାଶ ପୂଜା ଆରମ୍ଭ ହୋଇନଥାଏ । ଡାକିବା ପରେ ସିଂହାସନରୁ ଓହ୍ଲାଇ ଦୁଇ ପାଳିଆ ପୁଷ୍ପାଳକ (ସୁଭଦ୍ରା ଓ ବଳଭଦ୍ରଙ୍କ ବାଡ଼ରେ) ଓ ଭିତରଛ ମହାପାତ୍ର (ଜଗନ୍ନାଥଙ୍କ ବାଡ଼ରେ) ପୂଜାରେ ବସିଥାନ୍ତି ଓ ଅନ୍ୟ ଜଣେ ପାଳିଆ ପୁଷ୍ପାଳକ ସେଠାରେ ଉପସ୍ଥିତ ଥାଆନ୍ତି । ସାଧାରଣ ମନୁଷ୍ୟ ଯେପରି ଶେଯରୁ ଉଠିବା ପରେ ମୁଖ ପ୍ରକ୍ଷାଳନ, ଦାନ୍ତଘଷା ବା ମାର୍ଜନ ଓ ପରେ ସ୍ନାନ କରିଥାନ୍ତି । ଠିକ୍ ସେହିପରି ପ୍ରଥମେ ଉପରୋକ୍ତ

ତିନିଜଣ ସେବକଙ୍କ ଦ୍ୱାରା ଠାକୁରମାନଙ୍କର କର୍ପୂର ଜଳରେ ମୁଖ ପ୍ରକ୍ଷାଳନ କରିଥାନ୍ତି । (ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଠାକୁରଙ୍କୁ ଏହି ଜଳ ସ୍ପର୍ଶ କରାନଯାଇ ଦୂରରୁ ମୁଖ ପ୍ରକ୍ଷାଳନ କଲାଭଳି ମୁଦ୍ରା ବା ଭଙ୍ଗୀ କରା ଯାଇଥାଏ ।) ଏହିପରି ତିନି ଠାକୁରଙ୍କୁ ଦାନ୍ତକାଠି ଓ ଜିଭ ଛେଲାନ୍ତି । ଏହି ଦାନ୍ତକାଠିର ଅଗ୍ରଭାଗ ଛେଚାଯାଇ ତହିଁରେ କର୍ପୂର ଓ ଗୁଆଗୁଣ୍ଡ ଦିଆ ଯାଇଥାଏ । ସମୟେ ସମୟେ କେବଳ କର୍ପୂର ଗୁଣ୍ଡ ଲଗା ଯାଇଥାଏ । ଏହାପରେ ଚନ୍ଦନ, ଅଁଳା ଓ ଦହି ପୂର୍ବ ବର୍ଣ୍ଣିତ ଦର୍ପଣମାନଙ୍କ ଉପରେ ଲଗା ଯାଇଥାଏ । ତତ୍ପରେ କର୍ପୂର ମିଶା ଜଳ ଢଳାଯାଇ ଠାକୁରଙ୍କ ସ୍ନାନ ବିଧି ହୋଇଥାଏ । (ସୂଚନାଯୋଗ୍ୟ ଯେ, ଠାକୁରମାନଙ୍କ ସମ୍ମୁଖରେ ଦର୍ପଣ ରଖିଲେ ସେହି ଦର୍ପଣରେ ମୂର୍ତ୍ତିମାନଙ୍କର ପ୍ରତିବିମ୍ବ ପଡ଼େ । ସେହି ପ୍ରତିବିମ୍ବ ଦ୍ୱାରା ଠାକୁରମାନଙ୍କର ସ୍ନାନାଦି କାର୍ଯ୍ୟ ସମାହିତ ହୁଏ । ବାସ୍ତବିକ୍ ସମସ୍ତ ରାଜକୀୟ ପଦ୍ଧତିର ଅନୁକରଣରେ ଏହି ସ୍ନାନ ହୋଇଥାଏ । ଶ୍ରୀବିଗ୍ରହମାନଙ୍କର ସ୍ନାନବିଧି ପୁଷ୍ପାଳକ ସେବକମାନଙ୍କ ଦ୍ୱାରା ପଞ୍ଚୋପଚାରରେ ପୂଜା ହୋଇଥାଏ । ଏଥିପାଇଁ ପ୍ରାୟ ୨୦ରୁ ୨୫ ମିନିଟ୍ ସମୟ ଲାଗିଥାଏ । ସ୍ୱତନ୍ତ୍ର ସ୍ନାନମନ୍ତ୍ରରେ ମହାପ୍ରଭୁମାନଙ୍କ ଅବକାଶ ସ୍ନାନ ଓ ପୂଜା ପ୍ରତ୍ୟହ ହୋଇଥାଏ । ଏହି ନୀତି ଚାଲୁଥିବା ସମୟରେ ମନ୍ଦିରର ଜ୍ୟୋତିଷ ଖୁରି ନାଏକ ସେଠାରେ ଠିଆହୋଇ ଠାକୁରମାନଙ୍କର ସେହି ଦିନର ନକ୍ଷତ୍ର ବିଚାର ଇତ୍ୟାଦି ଶୁଣାଇଥାନ୍ତି । ଯଦି ସେହି ଦିନ ଜନ୍ମ ନକ୍ଷତ୍ର ଥାଏ, ସେ ତଢ଼ାଉକରଣ ସେବକଙ୍କୁ କହିଥାନ୍ତି ଓ ମଧ୍ୟାହ୍ନ ଧୂପ ପରେ ନକ୍ଷତ୍ର ବନ୍ଦାପନା ହୋଇଥାଏ । ଠାକୁରମାନଙ୍କ ଅବକାଶ ବଢ଼ିଲେ ସେବକ ପାଳିଆ ଚୂନରା ସେବକ ପାଣି ଆଣି ଗରୁଡ଼ଙ୍କୁ ସ୍ନାନ କରନ୍ତି ।

ଅବକାଶ ନୀତି ସମ୍ପୃକ୍ତ ଦର୍ପଣିଆ ସେବକ 'ଶାଢ଼ୀ' ବନ୍ଧାଇବା ପରେ ହିଁ ଅବକାଶ ପୂଜାରେ ଦର୍ପଣ ଲଗାଇଥାନ୍ତି । ଏତଦ୍‌ବ୍ୟତୀତ ମୁଖ ପଖାଳ ସେବକ ରଥଯାତ୍ରା ସମୟରେ ରଥ ଉପରେ ଓ ଗୁଣ୍ଡିଚା ମନ୍ଦିର ଗର୍ଭଗୃହରେ ଅବକାଶ ନିମିତ୍ତ ପୂଜା ଠା' କରିଥାନ୍ତି । ଅଣସର ସମୟରେ ଭିତରକାଠ ସମ୍ମୁଖସ୍ଥ ପଟ୍ଟଚିତ୍ର ଠାକୁରଙ୍କ ସାମନାରେ ଅବକାଶ ପୂଜା ଠା' ହୋଇଥାଏ ।

ଅବକାଶ ପୂଜା ହେଉଥିବା ବେଳେ ସର୍ବସାଧାରଣଙ୍କୁ ଭିତରକୁ ଛଡ଼ାଯାଇ ନଥାଏ । ସେମାନେ ଭିତରକାଠ ଠାରେ ରହି ଦର୍ଶନ କରିଥାନ୍ତି । ଭିତରକୁ ଯାଇ ସ୍ନାନବିଧି ଦର୍ଶନ କରିବାକୁ ଇଚ୍ଛା କଲେ ୨୫ଟଙ୍କା ଦେଇ ପରିମାଣିକ ଟିକଟ କାଟି ଯାଇପାରିବେ । ଠାକୁରମାନଙ୍କ ସ୍ନାନଜଳ (ଯାହାକି ଦହି, ଅଁଳା, କର୍ପୂର, ତୁଳସୀ, ଚନ୍ଦନ ମିଶ୍ରିତ ଜଳ) ପ୍ରସାଦ ରୂପେ ବିତରିତ ହୋଇଥାଏ । ଭକ୍ତ ତଥା ଯାତ୍ରୀମାନେ ଏହି ଅବକାଶ ଜଳକୁ ପାଦୁକ ରୂପେ ଗ୍ରହଣ କରିଥାନ୍ତି ।



# ମଇଲମ ଓ ବେଶ

## (ଅବକାଶ ପର ମଇଲମ ଓ ବେଶ)

ଅବକାଶ ନୀତି ଶେଷ ହେବାପରେ ଠାକୁରମାନଙ୍କର ତଡ଼ପ ଓ ଉତ୍ତରୀୟ ବସ୍ତ୍ର ମଇଲମ ବା ଓଲାଗି କରାଯାଇଥାଏ ।

ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ୭ ଘଣ୍ଟା (ଦୈନିକ ପଞ୍ଜିକା ପ୍ରକାରେ) ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, ଏହି ନୀତି ପାଇଁ ବାରଲାଗି ଲୁଗା ଓ ରାଶିତେଲ ଆବଶ୍ୟକ ।

ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପ୍ରଦତ୍ତ ବାରଲାଗି ଲୁଗା ଚାଙ୍ଗଡ଼ା ମେକାପଙ୍କ ଜିମାରେ ରହିଥାଏ । ରାଶିତେଲ କୋଠଭୋଗ ଗୋଦାମରୁ ଅଖଣ୍ଡ ମେକାପଙ୍କ ଜିମାରେ ଦିଆଯାଏ । ସମ୍ପୃକ୍ତ ସେବକ ଠାକୁରଙ୍କ ନୀତି ବେଳେ ଏହି ଜିନିଷାଦ୍‌ମାନ ଯୋଗାଇଥାନ୍ତି ।

ନିମ୍ନଲିଖିତ ସେବକମାନଙ୍କ ଦ୍ୱାରା ଅବକାଶ ପର ମଇଲମ ନୀତି ସମ୍ପନ୍ନ ହୋଇଥାଏ । ଯଥା- (୧) ପୁଷ୍ପାଳକ, (୨) ଚାଙ୍ଗଡ଼ା ମେକାପ, (୩) ଅଖଣ୍ଡ ମେକାପ, (୪) ସୁଆରବଡୁ । ପୂର୍ବରୁ ଅବକାଶ ପୂଜାରେ ବସିଥିବା ଭିତରଚ୍ଛ ମହାପାତ୍ର ଅବକାଶ ନୀତି ଶେଷ ହେବାପରେ ଚାଲି ଯାଇଥାନ୍ତି । ସାଧାରଣତଃ ଉକ୍ତ ଦିନର ତିନି ଜଣ ପାଳିଆ ପୁଷ୍ପାଳକ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଦେବୀ, ଶ୍ରୀସୁଦର୍ଶନ, ଶ୍ରୀମାଧବ, ଶ୍ରୀଲକ୍ଷ୍ମୀ, ଶ୍ରୀସରସ୍ୱତୀଙ୍କ ବସ୍ତ୍ର ପିନ୍ଧାଇଥାନ୍ତି । ଏହି ସମୟରେ ଚାଙ୍ଗଡ଼ା ମେକାପ ବାରଲାଗି ଲୁଗା ଯୋଗାଇଥାନ୍ତି । ବାରଲାଗି ଲୁଗା ସେଟ୍‌ର ମାପ ଓ ବିଭିନ୍ନ ଦିବସରେ ଠାକୁରମାନେ ପରିଧାନ କରୁଥିବା ଭିନ୍ନ ଭିନ୍ନ ରଙ୍ଗ ବା ବର୍ଣ୍ଣର ପାଟ ସମ୍ବନ୍ଧରେ ନିମ୍ନରେ ଉଲ୍ଲେଖ କରାଗଲା ।

ସାଧାରଣତଃ ବିଭିନ୍ନ ମାପର ସିଲକ୍ ପାଟବସ୍ତ୍ରକୁ 'ବାରଲାଗି ସେଟ୍' କୁହାଯାଇଥାଏ । ଏଥିରେ ଶାଢ଼ୀ ୩ଟି, ୭ଟି ଚାଦର ଏହିପରି ମୋଟ ୧୦ ଖଣ୍ଡ ବସ୍ତ୍ର ଏହି ସେଟ୍‌ର ଅନ୍ତର୍ଭୁକ୍ତ । ଯଥା :-

**ଶାଢ଼ୀ :-** ୧୮ ହାତ ଲମ୍ବା ଓ ୬୦ ଇଞ୍ଚ ଚଉଡ଼ା- ୧ (ଶ୍ରୀଜଗନ୍ନାଥ)

୧୬ ହାତ ଲମ୍ବା ଓ ୬୦ ଇଞ୍ଚ ଚଉଡ଼ା- ୧ (ଶ୍ରୀବଳଭଦ୍ର)

୧୪ ହାତ ଲମ୍ବା ଓ ୬୦ ଇଞ୍ଚ ଚଉଡ଼ା- ୧ (ଶ୍ରୀସୁଭଦ୍ରା)

**ଚାଦର :-** ୮ ହାତ ଲମ୍ବା ଓ ୬୦ ଇଞ୍ଚ ଚଉଡ଼ା - ୪ଟି ଚାଦର

(ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀସୁଦର୍ଶନଙ୍କ ନିମିତ୍ତ

୨୧/୨ (ଅଢ଼େଇହାତ ଲମ୍ବା ଓ ୬୦ ଇଞ୍ଚ ଚଉଡ଼ା) ୩ଟି (ଭୂଦେବୀ, ଶ୍ରୀଦେବୀ ଓ ମାଧବଙ୍କ ପାଇଁ)

ସୂଚନାଯୋଗ୍ୟ ଯେ, ପୂର୍ବରୁ ଏହି ପାଟବସ୍ତ୍ରର ମାପ ଯଥାକ୍ରମେ ୧୬, ୧୪ ଓ ୧୨ ହାତ ଲମ୍ବ ବିଶିଷ୍ଟ ଥିଲା । ସଂପ୍ରତି ଏହା ୧୮, ୧୬ ଓ ୧୪ ହାତ ଲମ୍ବର ପାଟ ଆବଶ୍ୟକ ପଡୁଅଛି । ବିଭିନ୍ନ ଦିବସ ଅନୁଯାୟୀ ଠାକୁରମାନଙ୍କର ବସ୍ତ୍ରର ରଙ୍ଗ ମଧ୍ୟ ବଦଳେ । ନିମ୍ନରେ ତାହା ଉଲ୍ଲେଖ କରାଗଲା ।

ରବିବାର - ନାଲି ରଙ୍ଗର ପାଟ

ସୋମବାର - କଳାଛିଟା ମିଶା ଧଳାରଙ୍ଗର ପାଟ

ମଙ୍ଗଳବାର - ବାଂରପଟିଆ (ପାଞ୍ଚ ରଙ୍ଗ ମିଶା) ପାଟ

ବୁଧବାର - ନୀଳ ରଙ୍ଗର ପାଟ

ଗୁରୁବାର - ହଳଦିଆ ରଙ୍ଗ ପାଟ

ଶୁକ୍ରବାର - ଧଳା ରଙ୍ଗର ପାଟ

ଶନିବାର - କଳା ରଙ୍ଗର ପାଟ ।

ସଂପ୍ରତି ଅବକାଶ ଲୁଗା ଅର୍ଥାତ୍ ତଡ଼ପ, ଉତ୍ତରୀୟ ବସ୍ତ୍ର ବ୍ୟତୀତ ଅନ୍ୟ ପାଟବସ୍ତ୍ର ସାମୟିକ ଭାବେ ମନ୍ଦିର କମାଣ୍ଡରଙ୍କ ତତ୍ତ୍ୱାବଧାନରେ ମନ୍ଦିର ପରିସରରେ ସଫା କରା ଯାଉଥିବା ଜଣାଯାଏ । ଅବକାଶ ପରେ ମୈଲମ ହେବା ସମୟରେ ଅଖଣ୍ଡ ମେକାପ ଅଖଣ୍ଡ ବଇଠା ବସାଏ । ଏହା ରାତ୍ର ପହୁଡ଼ ପର୍ଯ୍ୟନ୍ତ ଜଳିବାର ନିୟମ । ଏହିସବୁ ଦୀପ ଜଳା ହେବା ପାଇଁ ଶ୍ରୀମନ୍ଦିରସ୍ଥିତ କୋଠଭୋଗ ଗୋଦାମରୁ ଦୈନିକ ଅଖଣ୍ଡ ମେକାପ ସେବକକୁ ରାଶିତେଲ ଦିଆଯାଏ ।

ଠାକୁରମାନଙ୍କ ମଇଲମ ଶେଷ ହୋଇ ବାରଲାଗି ଲୁଗା ପରିଧାନ ବା ପିନ୍ଧାଯିବା ପରେ ସୁଆରବଡୁ ସେବକ ଅବକାଶ ଜଳ ଇତ୍ୟାଦି ପହଁରି ସଫା କରେ । ଏହାପରେ ସର୍ବସାଧାରଣ ଦର୍ଶନ (ସାହାଣମେଲା) ପାଇଁ ପ୍ରସ୍ତୁତି ହୋଇଥାଏ ।



# ସାହାଣମେଲା

ଅତ୍ୟନ୍ତ ପ୍ରାଚୀନ ସମୟରୁ ଶ୍ରୀଜଗନ୍ନାଥ ମନ୍ଦିରରେ ସାହାଣମେଲା ବିଧି ପରମ୍ପରା ଅନୁଯାୟୀ ଅନୁଷ୍ଠିତ ହୋଇ ଆସୁଅଛି । 'ସାହାଣମେଲା' ଏକ ନୀତି ମଧ୍ୟରେ ପରିଗଣିତ ନହେଲେ ମଧ୍ୟ ଏହାର ଗୁରୁତ୍ୱ ରହିଅଛି । ସାହାଣମେଲା ଅର୍ଥ ସର୍ବସାଧାରଣ ଦର୍ଶନ । ସାହାଣ - ସର୍ବସାଧାରଣ, ମେଲା - ଦର୍ଶନ । ଅର୍ଥାତ୍ ସର୍ବସାଧାରଣ ଦର୍ଶନ ନିମିତ୍ତ ଉନ୍ମୁକ୍ତ ଦ୍ୱାର । କର୍ମାଙ୍ଗୀରେ ଉଲ୍ଲେଖ ଅଛି ଯେ, ''ଦୁଆର ଘର ପଢ଼ିଆରୀ - ସାହାଣମେଲା ଜଗିବ ।'' କଥିତ ଅଛି ଏହି ସାହାଣମେଲା ଅନଙ୍ଗଭୀମ ଦେବଙ୍କ ସମୟରୁ ପ୍ରଚଳିତ ହୋଇଥିଲା । ସାହାଣମେଲା ସମୟରେ ଭକ୍ତ ତଥା ଜନସାଧାରଣ ଭିତର ପୋଖରୀଆସ୍ଥ ରତ୍ନସିଂହାସନ ନିକଟକୁ ଯାଇ ଶ୍ରୀବିଗ୍ରହମାନଙ୍କର ଦର୍ଶନ ଲାଭ କରିବାର ସୁଯୋଗ ପାଇଥାନ୍ତି ।

ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି ଅନୁଯାୟୀ ପ୍ରତ୍ୟହ ଦୁଇଥର ସାହାଣମେଲା ହେବାର ନିୟମ । ପ୍ରଥମଟି ସକାଳ ସମୟରେ ଅବକାଶ ନୀତି ପରେ ଓ ଦ୍ୱିତୀୟଟି ରାତ୍ରରେ ସନ୍ଧ୍ୟା ଧୂପ ନୀତି ଶେଷ ହେବା ପରେ ସାହାଣମେଲା ନୀତି ହୋଇଥାଏ । କିନ୍ତୁ ବିଗତ ଅନେକ ବର୍ଷ ଧରି ଦୈନନ୍ଦିନ ନୀତିରେ ବିଳମ୍ବ ତଥା ସ୍ୱତ୍ୱଲିପି ଉଲ୍ଲେଖ ପ୍ରକାରେ ସେହି ସମୟାନୁଯାୟୀ ଠାକୁରମାନଙ୍କ ନୀତି ସଂପାଦନ ହୋଇପାରୁ ନଥିବାରୁ ସନ୍ଧ୍ୟା ଧୂପ ପରେ 'ସାହାଣମେଲା' ହୋଇ ନଥାଏ ।

'ସାହାଣମେଲା' ସଂପର୍କରେ ସ୍ୱତ୍ୱଲିପିରୁ ଜଣାଯାଏ ଯେ, ''ଏହି ନୀତିରେ ନିମ୍ନଲିଖିତ ସେବକମାନେ ଉପସ୍ଥିତ ହୋଇଥାଆନ୍ତି । ଯଥା - ପୁଷ୍ପାଳକ, ଖୁଣ୍ଟିଆ, ମେକାପ, ତଢ଼ଉ କରଣ, ଗୋଚ୍ଛିକାର, ପ୍ରତିହାରୀ, ସୁଆରବଡୁ, ଦେଉଳ ପୋଲିସ୍ ଓ ଅଫିସର । ସାଧାରଣତଃ ପ୍ରତିଦିନ ସକାଳ ସମୟରେ ଅବକାଶ ନୀତି ପରେ ଗୋଟିଏ ଥର ସାହାଣମେଲା କରା ଯାଇଥାଏ । ଏହି 'ସାହାଣମେଲା' ପ୍ରାୟ ୪୫ ମିନିଟ୍‌ରୁ ୧ ଘଣ୍ଟା ୧୫ମିନିଟ୍ ସମୟ ଧରି ହୋଇଥାଏ । ମାଘ ଓ ପୌଷ ମାସରେ (ଗଙ୍ଗା ସାଗର ଓ ପୁଷ୍ୟଗୟା ସମୟରେ) ଶ୍ରୀକ୍ଷେତ୍ରରେ ଲକ୍ଷାଧିକ ଯାତ୍ରୀଙ୍କର ସମାଗମ ହେଉଥିବା ଦୃଷ୍ଟେ 'ସାହାଣମେଲା' ସମୟ ୨ ଘଣ୍ଟାରୁ ୪ ଘଣ୍ଟା ପର୍ଯ୍ୟନ୍ତ ଚାଲିଥାଏ ।''

ସାହାଣମେଲା ଦର୍ଶନ ସମ୍ବନ୍ଧରେ ୧୯୭୭ ମସିହା ଜଷ୍ଟିସ୍ ବି.କେ. ପାତ୍ର କମିଶନ୍ ତାଙ୍କ ରିପୋର୍ଟରେ ୧୬୪ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ, "Sarbasadharan darsan, which is popularly known as Sahana Mela, in the temple takes place twice a day, once in the morning immediately after abakash and for the second time during night immediately after sandhya dhup. At present on account of the delayed performance of

nitis, sandhya dhup very often takes place at a very late hour in the night, and consequently Sahana Mela at that late hour is not held."

× × × × × × × × × ×

"Sarbasadharan Darsan is free Darsan, when nobody is required to pay any fee for going into the sanctorum.

Excepting at the time scheduled for Sarbasadharan Darsan no pilgrims is allowed to enter into the Bhittar Pokharia except on payment of paramanik fees."

× × × × × × × × × ×

"During Sahana Mela pilgrims go up to the Ratna Singhasan and after darsan of the deities they do parikrama along the lane behind the Ratna Singhasan and then come out of the Bhittar Pokharia. No pilgrim is allowed to touch the deities, and if anybody accidentally does so the deity is supposed to be polluted and a Mahasnan takes place. If during the time the pilgrims are inside the Pokharia, anybody vomits or passes urine or if anybody is injured and blood falls inside the Pokharia that also is supposed to pollute the deites and Mahasnan takes place."

ପ୍ରତ୍ୟେହ ଅନୁଷ୍ଠିତ ସାହାଣମେଲା ସମୟରେ ଭକ୍ତ ତଥା ଦର୍ଶନାର୍ଥୀମାନେ ନାଟମଣ୍ଡପ, ଜୟ ବିଜୟ ଦ୍ୱାର, ଜଗମୋହନ, ଭିତର କାଠ, କଳାହାଟ ଦ୍ୱାର ଦେଇ ଭିତର ପୋଖରୀଆସ୍ଥ ରତ୍ନସିଂହାସନ ନିକଟକୁ ଯାଇ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରିଥାନ୍ତି । ତତ୍ପରେ ରତ୍ନସିଂହାସନର ଚତୁଃପାର୍ଶ୍ୱ ପରିକ୍ରମା କରି ପୁନଶ୍ଚ କଳାହାଟ ଦ୍ୱାର ଓ ଧୁକୁଡ଼ି ଦ୍ୱାର ଅତିକ୍ରମ କରି ବେହେରଣ ଦ୍ୱାର ଦେଇ ପ୍ରସ୍ଥାନ କରନ୍ତି ।

ଭିତର ପୋଖରିଆରେ ଠାକୁରମାନଙ୍କ ଦର୍ଶନ କରିବା ସମୟରେ ତଥା ସାହାଣମେଲା ସମୟରେ ଯଦି କୌଣସି ଲୋକ ଠାକୁରଙ୍କ ଶ୍ରୀଅଙ୍ଗକୁ ହାତ ବଢ଼ାଇ ଛୁଇଁ ଦିଏ ବା କୌଣସି ଯାତ୍ରୀ ସେଠାରେ ବାନ୍ତି, ମଳତ୍ୟାଗ, ପରିସ୍ରା କରେ କିମ୍ବା ରକ୍ତ ବା ଛେପ ପଡ଼େ, ତାହାହେଲେ ଠାକୁରଙ୍କ ମହାସ୍ନାନ ହୁଏ । ଛୁଆଁ ହେତୁ ମହାସ୍ନାନ କଲେ ମନ୍ଦିର ଧୁଆଯାଏ ନାହିଁ । କେବଳ ପୂଜାପଣ୍ଡା ଆସି ମନ୍ତ୍ର ପଢ଼ି ପଞ୍ଚାମୃତରେ ମହାସ୍ନାନ ନୀତି ବଢ଼ାଇଥାନ୍ତି । (ପାଳିଆ ପୁଷ୍ପାଳକ ଓ ପୂଜା ସମୟରେ ପୂଜାପଣ୍ଡା ବ୍ୟତୀତ ଅନ୍ୟ ସେବକ ମଧ୍ୟ ଛୁଇଁଲେ ଏହି ଛୁଆଁ ଦୋଷ ହୁଏ ଓ ମହାସ୍ନାନ ହୁଏ ।) ଛୁଆଁ ଛଡ଼ା ଅନ୍ୟ

କୌଣସି ଉପରୋକ୍ତ କାରଣରୁ ମହାସ୍ନାନ ହେଲେ ତାହାକୁ 'ବଡ଼ ମହାସ୍ନାନ' କୁହାଯାଏ । ବଡ଼ ମହାସ୍ନାନରେ ସିଂହାସନଠାରୁ ଜୟ ବିଜୟ ଦ୍ୱାର ପର୍ଯ୍ୟନ୍ତ ଧୁଆ ହୁଏ । ଦୋଷ କରିଥିବା ଲୋକଠାରୁ ଜୋରିମାନା ଆଦାୟ କରାଯାଏ । ଯଦି ଦୋଷୀ କିଏ ଜଣା ନ ଯାଏ, ମନ୍ଦିର କର୍ତ୍ତୃପକ୍ଷ ମନ୍ଦିର ପାଣ୍ଠିରୁ ଖର୍ଚ୍ଚ କରି ମହାସ୍ନାନ କରାନ୍ତି । ସୂଚନାଯୋଗ୍ୟ ଯେ, ସେଥିନିମନ୍ତେ ଛୋଟ ଶିଶୁମାନଙ୍କୁ ସିଂହାସନ ନିକଟକୁ ଛଡ଼ା ଯାଇ ନଥାଏ ।

ସାହାଣମେଲା ସମୟରେ ରତ୍ନସିଂହାସନ ଉପରେ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଦେବୀଙ୍କ ସମ୍ମୁଖରେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ୩ ଗୋଟି ଝରି (ଗଡୁ) ରଖା ଯାଇଥାଏ । ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, ଶ୍ରୀମନ୍ଦିରର ତତ୍କାଳୀନ ମ୍ୟାନେଜର ଶ୍ରୀ ରାଜକିଶୋର ଦାସଙ୍କ ସମୟରୁ ସିଂହାସନ ଉପରେ ତିନି ଠାକୁରଙ୍କ ପାଦ ଦେଶରେ ୩ ଗୋଟି ପିତଳ ଝରି ରଖା ଯାଉଅଛି । ଯାତ୍ରୀ ତଥା ଦର୍ଶନାର୍ଥୀମାନେ ଉକ୍ତ ଝରିରେ ଶ୍ରୀଜୀଉମାନଙ୍କ ଉଦ୍ଦେଶ୍ୟରେ ଟଙ୍କା, ସୁନା ଇତ୍ୟାଦି ଗୁପ୍ତଦାନ କରିଥାନ୍ତି । ଝରିମାନଙ୍କରେ ପଡୁଥିବା ଦାନକୁ ଶ୍ରୀମନ୍ଦିର ଭାଷାରେ ''ପିଣ୍ଡିକା'' କୁହାଯାଏ । ଉପରୋକ୍ତ ପିଣ୍ଡିକା ବାବଦ ଆଦାୟ ଅର୍ଥରୁ ନିର୍ଦ୍ଦିଷ୍ଟ ଅଂଶ ସଂପୃକ୍ତ ସେବକମାନେ ପାଇଥାନ୍ତି ।

ସାହାଣମେଲା ଚାଲିଥିବା ସମୟରେ ରତ୍ନସିଂହାସନ ଉପରେ ପାଳିଆ ପୁଷ୍ପାଳକ (ସିଂହାରୀ)ମାନେ ତିନି ବାଡ଼ରେ ବସିଥାନ୍ତି । ସିଂହାସନ ତଳେ ଖୁଣ୍ଟିଆ, ମେକାପ ଓ ଶ୍ରୀମନ୍ଦିରର ବରକନ୍ଦାଜ (ମନ୍ଦିର ପୋଲିସ କର୍ମଚାରୀ) ଓ ଡିୟୁଟି ଅଫିସର ଉପସ୍ଥିତ ଥାଆନ୍ତି । ଏତଦ୍‌ବ୍ୟତୀତ କେତେକ ପ୍ରତିହାରୀ, ଗୋଛିକାର ସେବକ ଜୟ ବିଜୟ ଦ୍ୱାର, ମୁଦୁଲି ଦ୍ୱାର, କଳାଘାଟ ଦ୍ୱାର, ଭିତର କାଠ, ଧୁକୁଡ଼ି ଦ୍ୱାର ଇତ୍ୟାଦି ସ୍ଥାନମାନଙ୍କରେ ଉପସ୍ଥିତ ରହି ଯାତ୍ରୀମାନଙ୍କର ଯାତାୟାତ ନିୟନ୍ତ୍ରଣ କରିଥାନ୍ତି ।

ଉଲ୍ଲେଖଯୋଗ୍ୟ ଯେ, ଶ୍ରୀମନ୍ଦିରରେ ପାଳିତ ଦୈନନ୍ଦିନ ନୀତି ବ୍ୟତୀତ କେତେକ ବିଶେଷ ନୀତି, ଉତ୍ସବ, ପର୍ବ, ଯାତ୍ରା, ସ୍ୱତନ୍ତ୍ର ବେଶ ଦିନମାନଙ୍କରେ ସାହାଣମେଲା ସମୟର ପରିବର୍ତ୍ତନ ହୋଇଥାଏ । ଦୀର୍ଘ ଏକ ବର୍ଷର ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକାକୁ ଅନୁଧ୍ୟାନ କରାଯାଇ ସାଧାରଣ ଦିନ ବ୍ୟତୀତ ନିମ୍ନଲିଖିତ ପର୍ବ, ଉତ୍ସବ ଦିବସମାନଙ୍କରେ ସାହାଣମେଲା ଅନୁଷ୍ଠିତ ହେଉଥିବା ବିବରଣୀ ଉଲ୍ଲେଖ କରାଗଲା ।

**(୧) ଧନୁ ସଂକ୍ରାନ୍ତି :** ପହିଲି ଭୋଗ ଓ ସକାଳ ଧୂପ ଶେଷ ପରେ ସାହାଣମେଲା ଅନୁଷ୍ଠିତ ହୋଇଥାଏ । ସୂଚନାଯୋଗ୍ୟ ଯେ, ପହିଲି ଭୋଗ ମାସ ସମୟରେ ସାହାଣମେଲା ଅବକାଶ ନୀତି ପରେ ନହୋଇ ସକାଳ ଧୂପ ପରେ ହୋଇଥାଏ । ଏହା ସାଧାରଣତଃ ଡ଼ିସେମ୍ବର ଓ ଜାନୁଆରୀ ମାସରେ ପଡ଼ିଥାଏ ।

**(୨) ମକର ସଂକ୍ରାନ୍ତି :** ଏହି ଦିନ ଅଧିକ ନୀତି ଥିବାରୁ ସାହାଣମେଲା ହୋଇ ନ ଥାଏ ।

(୩) ଦେବାଭିଷେକ ପୂର୍ଣ୍ଣିମା : ମଧ୍ୟାହ୍ନ ଧୂପ ଓ ଭୋଗମଣ୍ଡପ ପରେ ସାହାଣମେଲା ହୋଇଥାଏ ।

(୪) ପଦ୍ମବେଶ ଦର୍ଶନ ଦିବସ : ପଦ୍ମବେଶର ପରଦିନ ପ୍ରତ୍ୟୁଷରୁ ମଙ୍ଗଳ ଆଳତୀ ପରେ ସାହାଣମେଲା ହୋଇଥାଏ ।

(୫) ମାଘ ପୂର୍ଣ୍ଣମୀ (ଗଜ ଉଦ୍ଧାରଣ ବେଶ) : ଉକ୍ତ ଦିନ ଅବକାଶ ନୀତି ପରେ ସାହାଣମେଲା ନହୋଇ ସନ୍ଧ୍ୟା ଧୂପ ଶେଷ ପରେ ଠାକୁରଙ୍କ ଗଜ ଉଦ୍ଧାରଣ ବେଶ ଥାଇ ସାହାଣମେଲା ଦର୍ଶନ ହୋଇଥାଏ ।

(୬) ଦୋଳ ପୂର୍ଣ୍ଣମୀ : ସକାଳ ଧୂପ ଓ ଭୋଗମଣ୍ଡପ ପୂଜା ଶେଷ ହେବା ପରେ ସାହାଣମେଲା ହୋଇଥାଏ ।

(୭) ଦୋଳ ପୂର୍ଣ୍ଣମୀ ପରଦିନ ଅର୍ଥାତ୍ ପ୍ରତିପଦ : ଉକ୍ତ ଦିନ ମଧ୍ୟାହ୍ନ ଧୂପ ଶେଷ ହେବା ପରେ ଆଜ୍ଞାମାଳ ପାଇ ଚଳନ୍ତି ପ୍ରତିମା ବିମାନକୁ ବିଜେ କରିବା ପରେ ସାହାଣମେଲା ହୁଏ ।

(୮) ଅକ୍ଷୟ ତୃତୀୟା : ଶ୍ରୀମନ୍ଦିର ଦକ୍ଷିଣି ଘରୁ ଚଳନ୍ତି ପ୍ରତିମାମାନେ ଚନ୍ଦନଯାତ୍ରା ଉଦ୍ଦେଶ୍ୟରେ ବିମାନକୁ ବିଜେ କରିବା ପରେ ଓ ଭୋଗମଣ୍ଡପ ପୂଜା ଶେଷ ପରେ ସାହାଣମେଲା ହୋଇଥାଏ ।

(୯) ନୀଳାଦ୍ରି ମହୋଦୟାଷ୍ଟମୀ : ଉକ୍ତ ଦିନ ସାହଣମେଲା ହୁଏ ନାହିଁ ।

(୧୦) ନୃସିଂହ ଜନ୍ମ (ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ) : ଏହି ଦିନ ଅଧିକ ନୀତି ଥିବାରୁ ସାହାଣମେଲା ହୋଇ ନଥାଏ ।

(୧୧) ଶ୍ରୀକ୍ଷେତ୍ର ଭଉଁରୀ : ଉକ୍ତ ଦିନ ଯାତ ଭୋଗ ଓ ମଧ୍ୟାହ୍ନ ଧୂପ ଶେଷ ପରେ ସାହାଣମେଲା ହୋଇଥାଏ ।

(୧୨) ଦେବସ୍ନାନ ପୂର୍ଣ୍ଣିମା (ଜ୍ୟେଷ୍ଠ ପୂର୍ଣ୍ଣିମା) : ଘଣ୍ଟଛତା ଭୋଗ, ସକାଳ ଧୂପ ଓ ବନ୍ଦାପନା ଶେଷ ପରେ ସ୍ନାନବେଦୀରେ ଶ୍ରୀଜୀଉମାନଙ୍କର ସାହାଣମେଲା ଦର୍ଶନ ହୋଇଥାଏ ।

(୧୩) ଅନ୍‌ବସର (୧୫ ଦିନ) : ଅନବସର ଦିନମାନଙ୍କରେ ସାହାଣମେଲା ହୋଇ ନଥାଏ ।

(୧୪) ନବଯୌବନ ଦର୍ଶନ ଓ ନେତ୍ରୋତ୍ସବ : ଉକ୍ତ ଦିନ ଅବକାଶ ନୀତି ପରେ ଦଶ ଅବତାର ଦିଅଁ ବିଜେ ଓ ଟାଟି ଫିଟିବା ପରେ ପ୍ରଥମେ ପରିମାଣିକ ଦର୍ଶନ ହୋଇଥାଏ । ତପୂରେ ସାହାଣମେଲା ଦର୍ଶନ ହୁଏ ।

(୧୫) ଉଭା : ଯେଉଁ ବର୍ଷ ରଥଯାତ୍ରାରେ ଉଭା ପଡ଼ିଥାଏ, ଉକ୍ତ ତିଥିରେ ସାହାଣମେଲା ହୋଇ ନଥାଏ ।

(୧୬) ଶ୍ରୀଗୁଣ୍ଡିଚା (ରଥଯାତ୍ରା) : ଉକ୍ତ ଦିନ ସାହାଣମେଲା ନଥାଏ ।

(୧୭) ଧୂଳିଆ ଗୁଣ୍ଡିଚା : ଠାକୁରମାନେ ରଥରେ ବିଜେ କରିଥିବାରୁ ସ୍ୱତନ୍ତ୍ର ଭାବେ ସାହାଣମେଲା ହୋଇ ନଥାଏ ।

(୧୮) ସନ୍ଧ୍ୟା ଦର୍ଶନ : ଗୁଣ୍ଡିଚା ମନ୍ଦିରରେ ଠାକୁରମାନେ ଅବସ୍ଥାନ କରୁଥିବା ସମୟରେ ସନ୍ଧ୍ୟାଦର୍ଶନ ଦିନ ସାହାଣମେଲା ରଖା ଯାଇ ନଥାଏ ।

(୧୯) ବାହୁଡ଼ା ଯାତ୍ରା : ଉକ୍ତ ଦିନ ସାହାଣମେଲା ନଥାଏ ।

(୨୦) କୃଷ୍ଣ ବଳରାମ ବେଶ (ଭାଦ୍ରବ କୃଷ୍ଣ ତ୍ରୟୋଦଶୀ) : କୃଷ୍ଣ ବଳରାମ ବେଶ ପରେ ସନ୍ଧ୍ୟା ଆରତୀ ଓ ସନ୍ଧ୍ୟା ଧୂପ ଶେଷ ହେବା ପରେ ସାହାଣମେଲା ଦର୍ଶନ ହୋଇଥାଏ ।

(୨୧) ରାଧାଷ୍ଟମୀ (ଭାଦ୍ରବ ଶୁକ୍ଳ ଅଷ୍ଟମୀ) : ଏ ଦିନ ମଧ୍ୟାହ୍ନ ଧୂପ ଶେଷ ଓ ସୁଦର୍ଶନ ମହାପ୍ରଭୁ ଆଜ୍ଞାମାଳ ପାଇ ବିମାନକୁ ବିଜେ କରିବା ପରେ ସାହାଣମେଲା ଦର୍ଶନ ହୋଇଥାଏ ।

(୨୨) ଦେବୋତ୍ଥାପନ ଓ ସହସ୍ରାକୁମ୍ଭାଭିଷେକ : ସକାଳ ଧୂପ ପରେ ଦୁର୍ଗା ସୋମନାଥ ମଣ୍ଡପ (ମାଜଣା ମଣ୍ଡପ)କୁ ବିଜେ ହେବାପରେ ସାହାଣମେଲା ହୁଏ ।

(୨୩) ଦଶହରା (ବିଜୟା ଦଶମୀ) : ଭୋଗମଣ୍ଡପ ଶେଷ ପରେ ସାହାଣମେଲା ହୁଏ ।

(୨୪) ରାଧା ଦାମୋଦର ବେଶ (ଆଶ୍ୱିନ ଶୁକ୍ଳ ଏକାଦଶୀ) : ଉକ୍ତ ଦିନ ମଧ୍ୟାହ୍ନ ଧୂପ ଶେଷ ପରେ ସାହାଣମେଲା ହୋଇଥାଏ ।

(୨୫) କୁମାର ପୂର୍ଣ୍ଣମୀ : ମଧ୍ୟାହ୍ନ ଧୂପ, ଦକ୍ଷିଣ ଘର ଭୋଗ, ଭୂଦେବୀ, ଶ୍ରୀଦେବୀ ଖଟଶେଯ ଘରକୁ ବିଜେ ତଥା ସୁଦର୍ଶନ ଦେବଙ୍କ ରତ୍ନସିଂହାସନରୁ ଚଉଦଳକୁ ବିଜେ ପରେ ସାହାଣମେଲା ଅନୁଷ୍ଠିତ ହୋଇଥାଏ ।

(୨୬) କାର୍ତ୍ତିକ ମାସ : ଏହି ମାସରେ ପ୍ରତିପଦଠାରୁ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ମଧ୍ୟାହ୍ନ ଧୂପ ପରେ ସାହାଣମେଲା ହୁଏ । କେବଳ ଏହି ମାସରେ ଯେଉଁ ଦିନ ଠାକୁରମାନଙ୍କ ନକ୍ଷତ୍ର ବନ୍ଦାପନା, ବନକଲାଗି କିମ୍ବା ଆଜ୍ଞାମାଳ ବିଜେ ଥାଏ, ଏହି ସବୁ ନୀତି ସରିବା ପରେ ସାହାଣମେଲା ହୋଇଥାଏ ।

(୨୭) କାର୍ତ୍ତିକ ଶୁକ୍ଳ ଏକାଦଶୀ (ଲକ୍ଷ୍ମୀନାରାୟଣ ବେଶ) : ଏହି ଦିନ ଶ୍ରୀମନ୍ଦିରରେ ସାହାଣମେଲା ହୋଇ ନଥାଏ ।

(୨୮) କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ (ବାମନ ବେଶ) : ବାଲଧୂପ ଓ ଭୋଗମଣ୍ଡପ ପରେ ସାହାଣମେଲା ହୋଇଥାଏ ।

(୨୯) କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ (ତ୍ରିବିକ୍ରମ ବେଶ) : ଦ୍ୱାଦଶୀ ଭଳି ଏ ଦିନ ମଧ୍ୟ ଭୋଗମଣ୍ଡପ ପରେ ସାହାଣମେଲା ହୁଏ ।

(୩୦) କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ (ଲକ୍ଷ୍ମୀନୃସିଂହ ବେଶ) : ଏହି ଦିନ ସାହାଣମେଲା ନାହିଁ ।

(୩୧) କାର୍ତ୍ତିକ ପୂର୍ଣ୍ଣିମା (ରାଜ ବେଶ) : ବାଲଧୂପ, ବନ୍ଦାପନା ଓ ଭୋଗମଣ୍ଡପ ପରେ ଲକ୍ଷାଧିକ ଦର୍ଶନାର୍ଥୀଙ୍କ ସମାଗମ ହେତୁ ଦୀର୍ଘ ସମୟ ଧରି ସାହାଣମେଲା ଅନୁଷ୍ଠିତ ହୋଇଥାଏ ।

ଉପରୋକ୍ତ ଦିନ ବ୍ୟତୀତ ଚନ୍ଦ୍ରଗ୍ରହଣ, ସୂର୍ଯ୍ୟପରାଗ ସମୟରେ ଦେବନୀତି ବନ୍ଦ ରହୁଥିବାରୁ ସେ ସମୟରେ ସାହାଣମେଲା ହୁଏ ନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ବିଗତ ୨୯-୧୧-୧୯୯୨ ତାରିଖ ଦିନ ଶ୍ରୀବିଗ୍ରହମାନଙ୍କର ଐତିହାସିକ ଅସ୍ଥାୟୀ ସିଂହାସନକୁ ସ୍ଥାନାନ୍ତର ହୋଇଥିବା ଯୋଗୁଁ ଉକ୍ତ ଦିନ ସାହାଣମେଲା ହୋଇ ନଥିଲା ।

ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ତ୍ୱଲିପିରେ ଉଲ୍ଲେଖ ହୋଇଛି ଯେ, ଏହା ଠାକୁରଙ୍କ ନୀତି ମଧ୍ୟରେ ଗଣ୍ୟ ନୁହେଁ । କେବଳ ସର୍ବସାଧାରଣଙ୍କୁ ଠାକୁରଙ୍କ ନିକଟକୁ ଯିବା ସକାଶେ ସୁବିଧା ଦେବାପାଇଁ, ମନ୍ଦିରର ଓ ସେବକମାନଙ୍କର ଆୟ ପାଇଁ ଏହା କରାଯାଏ ।



# ସାହାଣମେଲା ପର ବେଶ

ସାହାଣମେଲା ବା ସର୍ବସାଧାରଣ ଦର୍ଶନ ଶେଷ ହେବାପରେ ସୁଆରବଡୁ ସେବକ ପାଣି ପକାଇ ଭିତର ଗମ୍ଭୀରା ଧୋଇ ଥାଆନ୍ତି । ଏହାପରେ ଏହି ସେବକ କାଠ ଘୋଡ଼ା ଆଣି ରତ୍ନସିଂହାସନ ଉପରେ ପକାଇ ଥାଆନ୍ତି । ପାଳିଆ ପୁଷ୍ପାଳକ ସେବକ ଠାକୁରମାନଙ୍କ ଶ୍ରୀଭୁଜ ଉପରେ ପଡ଼ିଥିବା ବସ୍ତ୍ରଟିକୁ ମହାପ୍ରଭୁମାନଙ୍କ ମସ୍ତକରେ ଲାଗି କରିଥାନ୍ତି । ଏହାକୁ ''ଶିରକପଡ଼ା'' ଲାଗି ବୋଲି କୁହା ଯାଇଥାଏ ।

ଶ୍ରୀମନ୍ଦିର ଉପବନ ଓ ଭିତର ବେଢ଼ାସ୍ଥ ପାଦପଦ୍ମ ମନ୍ଦିର ଠାରେ ପୂର୍ବରୁ ପ୍ରସ୍ତୁତ ହୋଇଥିବା ପୁଷ୍ପ ଅଳଙ୍କାର ଓ ପୁଷ୍ପମାଳା ଇତ୍ୟାଦି ପାଳିଆ ଖୁଣ୍ଟିଆ ସଂଗ୍ରହ ପୂର୍ବକ ସିଂହାସନ ନିକଟରେ ଉପସ୍ଥିତ ହୋଇ ପୁଷ୍ପାଳକ ସେବକଙ୍କୁ ବଢ଼ାଇଥାନ୍ତି । ସାଧାରଣତଃ ଏହି ସମୟରେ ଚାରି ବିଗ୍ରହ ଯଥା ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କ ମସ୍ତକରେ ଗଭା (ତୁଳସୀରେ ନିର୍ମିତ) ଲାଗି ହୋଇଥାଏ । ଏତଦ୍‌ବ୍ୟତୀତ ତିନି ମୁଖ୍ୟ ବିଗ୍ରହମାନଙ୍କୁ ଗୁଣା, ଝୁମ୍ପା ଓ ଅଧରମାଳରେ ଭୂଷିତ କରା ଯାଇଥାଏ ।

ଉପରୋକ୍ତ ପୁଷ୍ପ ଅଳଙ୍କାର ଓ ମସ୍ତକରେ ପଡୁଥିବା ଏକ ଚାଦର (ଶିରକପଡ଼ା)ରେ ଠାକୁରମାନଙ୍କ ଏହି ବେଶ କାର୍ଯ୍ୟ ଶେଷ ହୋଇଥାଏ ।

ସାଧାରଣତଃ ଏହି ବେଶକୁ ''ସାଧା ବେଶ'' ନାମରେ କୁହାଯାଇଥାଏ । ଏହାପରେ ଗୋପାଳବଲ୍ଲଭ ଭୋଗ ପାଇଁ ପ୍ରସ୍ତୁତି ହୋଇଥାଏ । ଏଥି ପୂର୍ବରୁ ସୂର୍ଯ୍ୟ ପୂଜା, ଦ୍ୱାରପାଳ ପୂଜା, ରୋଷ ହୋମ ଇତ୍ୟାଦି ନୀତି ପୂଜାପଣ୍ଡା ଓ ଅନ୍ୟାନ୍ୟ ନୀତି ସମ୍ପୃକ୍ତ ସେବକଙ୍କ ଦ୍ୱାରା ସମାହିତ ହୋଇଥାଏ ।



# ରୋଷ ହୋମ

ଶ୍ରୀଜଗନ୍ନାଥ ମନ୍ଦିର ପରିସରସ୍ଥ ରୋଷଶାଳାରେ ଦୈନନ୍ଦିନ ହୋମ ନୀତି ସମ୍ପନ୍ନ ନହେବା ପର୍ଯ୍ୟନ୍ତ ମୁଖ୍ୟ ବିଗ୍ରହମାନଙ୍କ ରାଜ ଭୋଗ ତଥା କୋଠ ଭୋଗ ପ୍ରସ୍ତୁତ ହୋଇ ପାରି ନଥାଏ । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି ମୁତାବକ ରୋଷ ହୋମ ନୀତିର ନିର୍ଦ୍ଧାରିତ ସମୟ ସକାଳ ୮ ଘଣ୍ଟାରୁ ୮.୩୦ମି. ମଧ୍ୟରେ ହେବା ଉଚିତ । ଅପରପକ୍ଷରେ ଶ୍ରୀଜଗନ୍ନାଥ ମନ୍ଦିର ନୀତି ବିବରଣର ଦୈନିକ ପଞ୍ଜିକାରେ ଏହି ନୀତିରେ ନିର୍ଦ୍ଧାରିତ ସମୟ ୯ ଘଣ୍ଟା ବୋଲି ଉଲ୍ଲେଖ ରହିଛି ।

ନିମ୍ନଲିଖିତ ସେବକମାନଙ୍କ ଦ୍ୱାରା ଏହି ନୀତି ସମ୍ପନ୍ନ ହୋଇଥାଏ । ଯଥା :

୧. ଧୋ ପଖାଳିଆ ସେବକ
୨. ପାଳିଆ ପୂଜାପଣ୍ଡା
୩. ନିକାପ

ରୋଷ ହୋମ ନୀତି ପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଦୈନିକ ଏକ ଗୋଟି କାଠ ପିଢ଼ା, ୨୩୦ଗ୍ରାମ୍ ଘିଅ, ନଡ଼ିଆ-୧ଟି ଓ ଅଗ୍ନିପୂଜା ନିମନ୍ତେ କୋରା ଭୋଗ ଯୋଗାଇ ଦିଆ ଯାଇଥାଏ ।

ଏହି ହୋମ ପ୍ରତିଦିନ ଶ୍ରୀମନ୍ଦିର ରୋଷଶାଳାର କୋଠ ଭୋଗ ରୋଷରେ ହୋଇଥାଏ । ରୋଷ ହୋମ ପୂର୍ବରୁ ଧୋ ପଖାଳିଆ ସେବକ ରୋଷ ପାଣି ପକାଇ ପାଉଁଶ କାଢ଼ି ଧୋ ପଖାଳ (ସଫା) କରନ୍ତି । ଏଥିପାଇଁ ଉକ୍ତ ସେବକ ମହାପ୍ରସାଦ ଖେଇ ପାଇଥାନ୍ତି । ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, ''ଏହି ହୋମ ଦେଉଳ ପୁରୋହିତ କରିବା କଥା କିନ୍ତୁ ବର୍ତ୍ତମାନ (ସ୍ୱତ୍ୱଲିପି ପ୍ରସ୍ତୁତ ସମୟରେ) ପୂଜାପଣ୍ଡା ସେବକ ଏହି କାର୍ଯ୍ୟ କରୁଛନ୍ତି ।''

ହୋମ ହେବା ପୂର୍ବରୁ ରୋଷ ପାଇକ ହୋମ ସ୍ଥାନରେ ମୁରୁଜ ପକାଇବ । ମୁରୁଜ ପକା କାର୍ଯ୍ୟ ଶେଷ ହେଲେ କାଠରେ ନିଆଁ ଲଗାଇବ । ଏହାପରେ ଚିର୍ଚ୍ଛା ଅମୀନ (ମନ୍ଦିର ପୋଲିସ୍) ପୂଜାପଣ୍ଡାକୁ ହୋମରେ ବସିବା ପାଇଁ ଡାକିଥାନ୍ତି । ହୋମ ସମୟରେ ଅଗ୍ନି ପୂଜା ନିମନ୍ତେ କୋରା ଭୋଗ ହୋଇଥାଏ । ହୋମ କରିବା ପାଳିଆ ପୂଜାପଣ୍ଡା କାଠ ଆସନ ଓ ନଡ଼ିଆଟି ପ୍ରାପ୍ୟ ସ୍ୱରୂପ ପାଇଥାନ୍ତି । ରୋଷ ହୋମ ନୀତି ଶେଷ ହେବାକୁ ପ୍ରାୟ ୧୫ ମିନିଟ୍ ସମୟ ଲାଗିଥାଏ ।

ଉଲ୍ଲେଖଯୋଗ୍ୟ ଯେ, ରୋଷ ହୋମ ଓ ଠାକୁରମାନଙ୍କ ବେଶ କାର୍ଯ୍ୟ ଏକ ସମୟରେ ହୋଇଥାଏ ।



# ସୂର୍ଯ୍ୟ ପୂଜା

ଭଗବାନ ବିଷ୍ଣୁଙ୍କ ପୂଜନ ପୂର୍ବରୁ ସୂର୍ଯ୍ୟ ପୂଜା ଶାସ୍ତ୍ରସମ୍ମତ । ସମସ୍ତ ଦେବ ପୂଜାରେ ତଥା ଯାଗଯଜ୍ଞାଦିରେ ପ୍ରଥମେ ସୂର୍ଯ୍ୟ ପୂଜା ପରେ ଅନ୍ୟାନ୍ୟ ବିଧି ବିଧାନ, ପୂଜା ଇତ୍ୟାଦି ଅନୁଷ୍ଠିତ ହୋଇଥାଏ । ତେଣୁ ପଞ୍ଚଦେବ ଉପାସକ ସ୍ମାର୍ତ୍ତ ବ୍ରାହ୍ମଣଗଣ ପ୍ରଥମେ ସୂର୍ଯ୍ୟଙ୍କୁ ପୂଜା କରନ୍ତି । କାରଣ ସୂର୍ଯ୍ୟ ପୂଜା ପୂର୍ବରୁ ବିଷ୍ଣୁ ପୂଜା କଲେ ସମସ୍ତ ଉପାସନା ନିଷ୍ଫଳ ହୋଇଥାଏ ବୋଲି ଲୋକମତ ରହିଛି । ଯଥା :

''ସୂର୍ଯ୍ୟପୂଜାଂ ବିନାଂ ବିଷ୍ଣୋଂ ପୂଜାଃ ଯୋ ମୂଢ଼ଧୀଶ୍ଚରେତ୍ ।
ସ ପୂଜା ରାକ୍ଷସୈର୍ଗ୍ରାହ୍ୟା ପ୍ରୀତୋ ନସ୍ୟାଜ୍ଜନାର୍ଦ୍ଦନଃ ।।'' (ଭବିଷ୍ୟ ପୁରାଣ)

ସେହି ପରିପ୍ରେକ୍ଷୀରେ ପ୍ରତ୍ୟହ ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ସୂର୍ଯ୍ୟ ମନ୍ଦିରରେ ସୂର୍ଯ୍ୟ ପୂଜା ହେଉଅଛି ।

ଶ୍ରୀଜଗନ୍ନାଥ ଉପାସନାରେ ପଞ୍ଚ ଆଦିତ୍ୟଙ୍କ ନ୍ୟାସ ଦୃଷ୍ଟିଗୋଚର ହୁଏ । 'ନୀଳାଦ୍ରି ମହୋଦୟ' ଗ୍ରନ୍ଥର ୪୨ ଅଧ୍ୟାୟରେ ସୂର୍ଯ୍ୟଙ୍କର ବିଭିନ୍ନ ସମୟର ଧ୍ୟାନ ବିଷୟରେ ସ୍ପଷ୍ଟ ଉଲ୍ଲେଖ ରହିଛି ।

ଶ୍ରୀମନ୍ଦିରରେ ଶ୍ରୀବିଗ୍ରହମାନଙ୍କ ସାହାଣମେଲା (ସର୍ବସାଧାରଣ ଦର୍ଶନ) ଶେଷ ହେବା ପରେ ଓ କେତେକ ଦିନ ସ୍ୱତନ୍ତ୍ର ନୀତି ତଥା ଉତ୍ସବାଦି ମାନଙ୍କରେ ଅବକାଶ ପୂଜା ସରିବା ପରେ ସୂର୍ଯ୍ୟ ପୂଜା ଅନୁଷ୍ଠିତ ହୁଏ । ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ମୁକ୍ତିମଣ୍ଡପ ସଂଲଗ୍ନ ଏକ ଅନୁଚ୍ଚ ମନ୍ଦିରର ଲିଙ୍ଗାକୃତି ପଦ୍ମପୀଠରେ ପ୍ରତ୍ୟହ ସୂର୍ଯ୍ୟ ପୂଜା ହୋଇଥାଏ । (ଶ୍ରୀମନ୍ଦିରର ସ୍ୱତ୍ୱଲିପି ପ୍ଲଟ ନଂ ୮୭ ନମ୍ବରରେ ଉପରି ବର୍ଣ୍ଣିତ ମନ୍ଦିର ଅବସ୍ଥିତ ।)

ସୂର୍ଯ୍ୟ ପୂଜା ନୀତି ସମ୍ପର୍କରେ ଶ୍ରୀ ମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ୮ଟା ୩୦ ମିନିଟ୍‌ରୁ ୮ଟା ୪୫ ମିନିଟ୍ ମଧ୍ୟରେ । ସେହିପରି ଶ୍ରୀମନ୍ଦିର ଦୈନିକ ପଞ୍ଜିକାରେ ଏହି ନୀତିର ସମୟ ସକାଳ ୯ଟାରୁ ୯-୩୦ ମିନିଟ୍ ମଧ୍ୟରେ ହେବାର ନିୟମ ରହିଛି ।

ସୂର୍ଯ୍ୟ ପୂଜା ନୀତିରେ ପୂଜାପଣ୍ଡା, ସୁଆରବଡୁ, ପତ୍ରିବଡୁ, ଗରାବଡୁ, ଘଟୁଆରୀ ପ୍ରଭୃତି ସେବକମାନଙ୍କ ଆବଶ୍ୟକ ପଡ଼ିଥାଏ । ରୋଷ ହୋମ ଶେଷ ପରେ ସୂର୍ଯ୍ୟ ପୂଜା ନୀତି ହୋଇଥାଏ । ଏହି ନୀତି ସକାସେ ଦୁଇଗୋଟି କୋରା, ଫୁଲ, ଚନ୍ଦନ, ଘଣ୍ଟି, ଶଙ୍ଖ, ପିଢ଼ା ଓ ଝରୀ ଆବଶ୍ୟକ ପଡ଼ିଥାଏ । ପାଳିଆ ପତ୍ରି ଫୁଲ, ଘଟୁଆରୀ ଯୋଗାଇଥିବା ଚନ୍ଦନ, ଘଣ୍ଟି, ଶଙ୍ଖ, ପିଢ଼ା ଓ ଝରି ଇତ୍ୟାଦି ଅଣସର ପିଣ୍ଡିରୁ ଆଣି ଉପରୋକ୍ତ ମନ୍ଦିରରେ

ରଖିଥାନ୍ତି । ଗରାବଡୁ ସେବକ ପୂଜା ନିମନ୍ତେ ଜଳ ଯୋଗାଇଥାନ୍ତି । ସୂର୍ଯ୍ୟ ପୂଜା ନିମନ୍ତେ ସମସ୍ତ ଉପକରଣମାନ ପ୍ରସ୍ତୁତ ହୋଇ ସୂର୍ଯ୍ୟ ମନ୍ଦିରରେ ରଖାଯିବା ପରେ ଚର୍ଚ୍ଚା କର୍ମଚାରୀମାନେ ପାଳିଆ ପୂଜାପଣ୍ଡାଙ୍କୁ ଡାକିଥାନ୍ତି । ପୂଜାପଣ୍ଡା ସେବକ ଉକ୍ତ ମନ୍ଦିରରେ ସୂର୍ଯ୍ୟଙ୍କ ପଦ୍ମ ପୀଠଠାରେ ସୂର୍ଯ୍ୟ ମନ୍ତ୍ରରେ ପୁଷ୍ପ, ଚନ୍ଦନ ଦେଇ ପୂଜା କରିଥାନ୍ତି । ସୂର୍ଯ୍ୟ ପୂଜା ସମୟରେ ଧୂପ ନୈବେଦ୍ୟ ଉଦ୍ଦେଶ୍ୟରେ ସୁଆରବଡୁ ସେବକ ରୋଷରୁ ଧୂପଦାନୀରେ ବୈଷ୍ଣବାଗ୍ନି ଆଣି ପୂଜାପଣ୍ଡାଙ୍କୁ ଯୋଗାଇଥାନ୍ତି । ପୂଜା ନିମନ୍ତେ ଶ୍ରୀମନ୍ଦିର ପ୍ରଶାସନ କୋଠ ଭୋଗ ସରଘରୁ ୨ଟି କୋରା ଆସିଥାଏ । ପୂଜାପଣ୍ଡା ସେବକ ପୂଜା ଶେଷରେ କୋରା ଦୁଇଟି ନୈବେଦ୍ୟ ଦିଅନ୍ତି । ଉକ୍ତ ସେବକ ଏହି କୋରାକୁ ଖେଇ ସ୍ୱରୂପ ପାଇଥାନ୍ତି । ସୂର୍ଯ୍ୟ ପୂଜା ନିମନ୍ତେ ପ୍ରାୟ ୧୦ ମିନିଟ୍ ସମୟ ଲାଗିଥାଏ । ସୂର୍ଯ୍ୟ ପୂଜା ଶେଷ ହେବା ପରେ ଦ୍ୱାରପାଳ ପୂଜା ଅନୁଷ୍ଠିତ ହୋଇଥାଏ ।

ଉଲ୍ଲେଖଯୋଗ୍ୟ ଯେ, ସୂର୍ଯ୍ୟ ପୂଜା ନହେବା ପର୍ଯ୍ୟନ୍ତ ପରମ୍ପରା ମୁତାବକ ଶ୍ରୀମନ୍ଦିରରେ କୌଣସି ଧୂପ ବା ଭୋଗ ପୂଜା ଅନୁଷ୍ଠିତ ହୁଏନାହିଁ ।



# ଦ୍ୱାରପାଳ ପୂଜା

ଶ୍ରୀଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକା ଅନୁଯାୟୀ ପ୍ରତ୍ୟହ ସକାଳ ୯ଟା ୩୦ ମିନିଟ୍ ସମୟରେ ଦ୍ୱାରପାଳ ପୂଜା ହେବା ବିଧେୟ । ସୂର୍ଯ୍ୟ ପୂଜା ଶେଷ ହେବା ପରେ ଉକ୍ତ ପୂଜା ସହିତ ସମ୍ପୃକ୍ତ ପାଳିଆ ପୂଜାପଣ୍ଡା ଦ୍ୱାରପାଳ ପୂଜା କରିଥାନ୍ତି ।

ଶ୍ରୀ ମନ୍ଦିର ସ୍ୱତ୍ୱଲିପି ମୁତାବକ ଶ୍ରୀମନ୍ଦିର ଜଗମୋହନସ୍ଥିତ ଜୟ ବିଜୟ ଦ୍ୱାରର ଦକ୍ଷିଣ ପାଖ କାନ୍ଥରେ ଜୟ ଓ ଉତ୍ତର ପାଖ କାନ୍ଥରେବିଜୟ ମୂର୍ତ୍ତି ରହିଅଛି । ଉପରୋକ୍ତ ଚିତ୍ରିତ ମୂର୍ତ୍ତିଦ୍ୱୟ ଦ୍ୱାରପାଳ ଭାବେ ପରିଚିତ । ଉଲ୍ଲେଖଯୋଗ୍ୟ ଯେ, ବିଷ୍ଣୁ ମନ୍ଦିରର ଦ୍ୱାର ରକ୍ଷକମାନଙ୍କୁ ଜୟ ଓ ବିଜୟ କୁହାଯାଏ । ଜୟ ବିଜୟଙ୍କ ନାମାନୁସାରେ ଦ୍ୱାରର ନାମ "ଜୟ ବିଜୟ" ଦ୍ୱାର ହୋଇଅଛି । ଜୟ ବିଜୟଙ୍କୁ ଏହି ଦ୍ୱାରେ ପୂଜା କରାଯାଏ । ରତ୍ନସିଂହାନାଧିଷ୍ଠିତ ଶ୍ରୀବିଗ୍ରହମାନଙ୍କର ପ୍ରଥମ ଭୋଗ ଗୋପାଳ ବଲ୍ଲଭ ପୂଜା ପୂର୍ବରୁ ଏହି ଦ୍ୱାରପାଳ ପୂଜା ଅନୁଷ୍ଠିତ ହୋଇଥାଏ । ଦ୍ୱାରପାଳ ପୂଜା ସମୟରେ ପାଳିଆ ପୂଜାପଣ୍ଡା ଓ ପାଳିଆ ପତ୍ରି ଫୁଲ, ଚନ୍ଦନ, ଘଣ୍ଟି, ଶଙ୍ଖ, ପିଢ଼ା ଓ ଝରୀ ସୂର୍ଯ୍ୟ ପୂଜା ପରେ ସେଠାକୁ ନିଏ । ନିକାପ ମନ୍ଦିର କୋଠ ସରଘରୁ ୩ଗୋଟି କୋରା ନେଇ ଯୋଗାଏ । କିନ୍ତୁ ବାସ୍ତବରେ ପିଢ଼ା ଓ କୋରା ଇତ୍ୟାଦି ଚର୍ଚ୍ଚା କର୍ମଚାରୀମାନେ ଯୋଗାଇଥାନ୍ତି । ସୂର୍ଯ୍ୟ ପୂଜା ସମୟରେ ହେଉଥିବା ଧୂପ ନୈବେଦ୍ୟର ଅଗ୍ନି ପତ୍ରି ସେବକ ଦ୍ୱାରପାଳ ପୂଜା ପାଇଁ ଜୟ ବିଜୟ ଦ୍ୱାର ନିକଟକୁ ନେଇଥାନ୍ତି ।

ଅତୀତରେ ଦ୍ୱାରପାଳ ପୂଜା ଅନୁଷ୍ଠିତ ହେବା ପୂର୍ବରୁ ଜଗମୋହନ ଓ ବଡ଼ ଦେଉଳର ବାହାର ପାଖର ବାରଣ୍ଡା, ପାହାଚ ପ୍ରଭୃତି ଝାଡୁ ମଠ ଦ୍ୱାରା ପରିଷ୍କୃତ ହେଉଥିଲା । ଏଥିପାଇଁ ଖଞ୍ଜା ପାଇଥିବା ଜମି ଭୋଗ କରୁଥିଲେ । ସମ୍ପ୍ରତି ଦୀର୍ଘ ଅନେକ ବର୍ଷ ଧରି ଏହି ସଫେଇ କାର୍ଯ୍ୟ ଶ୍ରୀମନ୍ଦିରର ପରିମଳ କର୍ମଚାରୀଙ୍କ ଦ୍ୱାରା ସମ୍ପାଦିତ ହେଉଅଛି ।

ଜୟ ବିଜୟ ଦ୍ୱାର ତଳ ପାହାଚରେ ପତ୍ରିବଡୁ ସେବକ ୩ଗୋଟି ପାହାଡ଼ା (କଦଳୀପତ୍ର) ପକାଇ କୋରା ବାଢ଼ିଥାନ୍ତି । ସେଠାରେ ଫୁଲ, ଚନ୍ଦନ, ଘଣ୍ଟି, ଶଙ୍ଖ, ଝରୀ ଇତ୍ୟାଦି ପୂଜା ଉପକରଣମାନ ରଖିଥାନ୍ତି । ତତ୍ପରେ ପୂଜାପଣ୍ଡା ଜୟ ବିଜୟ (ଦ୍ୱାରପାଳ) ପୂଜା କରନ୍ତି ଓ ଦୁଇଟି କୋରା ନୈବେଦ୍ୟ କରିବା ସଙ୍ଗେ ସଙ୍ଗେ ସୂର୍ଯ୍ୟ ପୂଜା ସମୟରେ ଆସିଥିବା ଅଗ୍ନିରେ ଧୂପ ଦେଇଥାନ୍ତି । ଅବଶିଷ୍ଟ ଏକ ଗୋଟି କୋରା ସେହିଠାରେ ଗରୁଡ଼ଙ୍କୁ ନୈବେଦ୍ୟ ହୁଏ । ଏହି ପୂଜା ପଞ୍ଚପୋଚାରରେ ହୋଇଥାଏ ଓ ପୂଜା ନୀତି ପାଇଁ ପ୍ରାୟ ଦଶ ମିନିଟ୍ ସମୟ ଲାଗିଥାଏ । ଦ୍ୱାରପାଳ ପୂଜା ସମୟରେ ଜୟ ବିଜୟ ଦ୍ୱାର ପାହାଚରେ କୌଣସି ବାହାର ବ୍ୟକ୍ତି ପାଦ ଦେବା ନିଷେଧ । ଯଦି କୌଣସି ବ୍ୟକ୍ତି ଅଜାଣତରେ ପାଦ ପକାଇ ଦିଏ । ତେବେ ସେହି ପୂଜା ମାରା ହୁଏ ଓ ସେଠାରେ ମହାସ୍ନାନ ହୋଇ ପୁନର୍ବାର ପୂଜା ହୁଏ ।



# ଗୋପାଳବଲ୍ଲଭ ଭୋଗ

ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ପକ୍ଷରୁ ଦୈନନ୍ଦିନ ରତ୍ନସିଂହାସନସ୍ଥ ଶ୍ରୀବିଗ୍ରହମାନଙ୍କ ଉଦ୍ଦେଶ୍ୟରେ ହେଉଥିବା ବିଭିନ୍ନ ରାଜ ଭୋଗ ତଥା କୋଠ ଭୋଗ ମଧ୍ୟରେ ‘‘ଗୋପାଳବଲ୍ଲଭ’’ ବା ‘‘ବଲ୍ଲଭ’’ ଭୋଗ ଅନ୍ୟତମ । ଠାକୁରମାନଙ୍କର ଏହି ଭୋଗ ପ୍ରଥମ ତଥା ପ୍ରାତଃ ନୈବେଦ୍ୟ ଅଟେ । ଶ୍ରୀମନ୍ଦିର ସ୍ୱତ୍ୱଲିପି (Record of Rights) ମୁତାବକ ପ୍ରତ୍ୟହ ସକାଳ ୯ ଘଣ୍ଟା ସମୟରେ ବଲ୍ଲଭ ଭୋଗ ହେବାର ନିୟମ, କିନ୍ତୁ ବର୍ତ୍ତମାନର ପ୍ରଚଳିତ ଶ୍ରୀଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକା ଶ୍ରୀଜୀଉଙ୍କ ନୀତି ବିବରଣ ଅନୁସାରେ ଏହି ନୀତିର ନିର୍ଦ୍ଧାରିତ ସମୟ ପୂର୍ବାହ୍ନ ୧୦ ଘଣ୍ଟା ୩୦ ମିନିଟ୍ ଅଟେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଧନୁ ସଂକ୍ରାନ୍ତି ମାସରେ (ପୌଷ ମାସ) ଗୋପାଳବଲ୍ଲଭ ସହିତ ଏକାଠି ପହିଲି ଭୋଗ ହୋଇଥାଏ । ସେହିପରି ଦୋଳ ପୂର୍ଣ୍ଣିମା ଓ ସ୍ନାନ ପୂର୍ଣ୍ଣିମା ଦିନ ବଲ୍ଲଭ ଓ ସକାଳ ଧୂପ ଏକତ୍ର ହୁଏ ।

ସ୍ୱତ୍ୱଲିପିରେ ବର୍ଣ୍ଣିତ ହୋଇଥିବା ତଥ୍ୟ ଅନୁଯାୟୀ ‘ଗୋପାଳବଲ୍ଲଭ’ ନୀତି ନିମନ୍ତେ ୪୩ ଓଳି ପାଗ ଖଇ, ନଡ଼ିଆ କୋରା ୨୯୪ (ସାନ ୨୨୫ + ବଡ଼ ୬୯), ପାଚିଲା କଦଳୀ ୩ ସରା, ଖୁଆମଣ୍ଡା ୪, ଦହି- ୬ ସରା, ମାଖନ- ୩ ସରା, ପାତି ବା ଖୁଦ ନଡ଼ିଆ- ୩ ସରା, ୩ଟା ଥାଳି ଓ ୩ଟା ପରଖ ପ୍ରଭୃତି ଜିନିଷମାନ ଆବଶ୍ୟକ ହୋଇଥାଏ । କିନ୍ତୁ (ସ୍ୱତ୍ୱଲିପିରୁ ପ୍ରସ୍ତୁତ ସମୟରୁ) ଏଥିରୁ କେତେକ ଜିନିଷ ଭୋଗ ହେଉନାହିଁ । ଗୋପାଳବଲ୍ଲଭ ପୂଜା ନିମନ୍ତେ ନିମ୍ନଲିଖିତ ସେବକମାନେ ସମ୍ପୃକ୍ତ ହୋଇଥାନ୍ତି । (୧) ପୂଜାପଣ୍ଡା ୩ ଜଣ, (୨) ପାଳିଆ ମହାସୁଆର, (୩) ସୁଆରବଡ଼ୁ, (୪) ପତ୍ରିବଡ଼ୁ, (୫) ବଲ୍ଲଭ ଯୋଗାଣିଆ, (୬) ସୁଦୁ ସୁଆର, (୭) ପ୍ରଧାନୀ, (୮) ଗରାବଡ଼ୁ । ଏହା ବ୍ୟତୀତ ମନ୍ଦିରର ଚର୍ଚ୍ଚା (ପୋଲିସ) କର୍ମଚାରୀ ଏହି ନୀତି ପୂର୍ବରୁ ସମ୍ପୃକ୍ତ ସେବକମାନଙ୍କୁ ଜଣାଇଥାନ୍ତି ।

ଶ୍ରୀମନ୍ଦିରର ଅନ୍ୟାନ୍ୟ ଧୂପ ରତ୍ନସିଂହାସନ ତଳେ ବା ପୋଖରିଆରେ (ଭିତର ଗମ୍ଭୀରା) ଅନୁଷ୍ଠିତ ହେଉଥିବା ବେଳେ ଗୋପାଳବଲ୍ଲଭ ଭୋଗ କଳାହାଟ ଦ୍ୱାର ନିକଟ ଅନବସର ପିଣ୍ଡି (ଶ୍ରୀମନ୍ଦିରର ଭିତର କାଠ ନିକଟ) ବା ବଲ୍ଲଭ ପିଣ୍ଡିର ଉପରେ ହୋଇଥାଏ । ଦୈନିକ ଠାକୁରମାନଙ୍କ ସାହାଣମେଲା ଓ ବେଶ ସରିବା ପରେ ନୀତି ସମ୍ପୃକ୍ତ ସୁଦୁ ସୁଆର ବଲ୍ଲଭ ପିଣ୍ଡିକୁ ପାଣିଆପଟ ଯୋଗାଇଥିବା ଜଳରେ ଶୁଦ୍ଧପୁତ ଭାବରେ ପରିଷ୍କାର କରିବା ପରେ ୩ଟି ପିଙ୍ଗଣ ଓ ୩ଟି ପିତଳ ଥାଳି ଆଣି ରଖିଥାନ୍ତି । ବଲ୍ଲଭ ଭୋଗ ଓ ପୂଜା ପୂର୍ବରୁ ଜୟ ବିଜୟ ଦ୍ୱାର ବନ୍ଦ କରାଯାଏ । ଏହି ସମୟରେ ଅଧ ଘଣ୍ଟା ପାଇଁ ଭିତର କାଠ ନିକଟକୁ ଯିବାପାଇଁ ଭିତରକାଠ ଦର୍ଶନୀ ଟିକେଟ ନେଇ ଯାତ୍ରୀମାନେ ଯାଇଥାନ୍ତି । ଭିତରକାଠ

ଦର୍ଶନୀ ଟିକେଟ୍‌ର ବର୍ତ୍ତମାନର ମୂଲ୍ୟ ୫ଟଙ୍କା ରଖାଯାଇଛି । ପୂର୍ବରୁ ବଲ୍ଲଭ ଯୋଗାଣିଆ ଅମୁଣିଆ ରହୁଥିବା ସ୍ଥାନରେ ବଲ୍ଲଭ ସାମଗ୍ରୀ ରଖିଥାଏ । ସେହି ଭୋଗକୁ ପାଳିଆ ପ୍ରତିହାରୀକୁ ଜଣାଇ ସୁଦ୍ଧ ସୁଆର ୩ଟି ଥାଳି ଓ ପିଙ୍ଗଣରେ ଭୋଗ ବାଢ଼ିଥାନ୍ତି । ତପ୍ରେ ସୁଆରବଡୁ ଅମୁଣିଆ ପାଣି ପକାଇଥାନ୍ତି ଓ ପତ୍ରିବଡୁ ସେବକଙ୍କ ଦ୍ୱାରା ପୂଜା ଠା' ତଥା ଗରାବଡୁ ସେବକ ପାଣିଝରି ଲଗାଇଥାନ୍ତି । ଏହାପରେ ପାଳିଆ ମହାସୁଆର ବଲ୍ଲଭ ନେଇ ପନ୍ତିରେ ବାଢ଼େ । ଏହିସବୁ କାର୍ଯ୍ୟ ଶେଷ ହେବା ପରେ ଜଣେ ପ୍ରଧାନୀ ସେବକ ପୂଜାପଣ୍ଡା ତିନି ଜଣଙ୍କୁ ଡାକିବା ପାଇଁ ଯାଇଥାନ୍ତି । ବାସ୍ତବରେ ଶ୍ରୀମନ୍ଦିର ଚର୍ଚ୍ଚା କର୍ମଚାରୀ ଏହି କାର୍ଯ୍ୟ କରୁଥିବା ଜଣାଯାଏ । ପୂଜାପଣ୍ଡା ସେବକମାନେ ଅଣବସର ପିଣ୍ଡିଠାରେ ବସି 'ପଞ୍ଚୋପଚାର' ପୂଜାରେ ଗୋପାଳବଲ୍ଲଭ ଭୋଗ କରିଥାନ୍ତି । ବଲ୍ଲଭରେ ବାହାର ଟେରା ଭିତର କାଠ ପାଖରେ ପ୍ରତିହାରୀ ସେବକ ବାନ୍ଧନ୍ତି ଓ ତାହା ବନ୍ଧା ଯିବାପରେ ବଲ୍ଲଭ ବଢ଼ାଯାଏ । ସୂଚନାଯୋଗ୍ୟ ଯେ, ଅଣବସର ସମୟରେ ଠାକୁରମାନେ ଏହି ପିଣ୍ଡି ଉପରେ ବିରାଜମାନ କରୁଥିବାରୁ ତଥା ସେହି ସମୟରେ କେତେକ ଗୁପ୍ତ ନୀତି ଚାଲୁଥିବାରୁ ଏଠାରେ ବଲ୍ଲଭ ଭୋଗ ପୂଜା ନହୋଇ ଜୟ 'ବିଜୟ ଦ୍ୱାର ନିକଟରେ କେବଳ ତିନୋଟି ପିଙ୍ଗଣରେ ସୁଧ ସୁଆର ସେବକ ବଲ୍ଲଭ ଭୋଗ ବାଢ଼ିବା ପରେ ପାଳିଆ ମହାସୁଆର ଜଣେ ପୂଜାପଣ୍ଡାଙ୍କ ହାତକୁ ଉକ୍ତ ପିଙ୍ଗଣଗୁଡ଼ିକୁ ବଢ଼ାଇଥାନ୍ତି । ଉକ୍ତ ପୂଜାପଣ୍ଡା ସେବକ ଠାକୁରଙ୍କ ଉଦ୍ଦେଶ୍ୟରେ ବଲ୍ଲଭ ଭୋଗ ସମର୍ପଣ (ସର୍ପାମଣୋହି) କରି ଦିଅନ୍ତି । ରଥଯାତ୍ରା ସମୟରେ ତିନି ରଥ ଉପରେ ଠାକୁରମାନେ ଥିବା ସମୟରେ ଏହି ବଲ୍ଲଭ ଭୋଗ ବିଧି ଅନୁଯାୟୀ ରଥ ଉପରେ ପୂଜାପଣ୍ଡାଙ୍କ ଦ୍ୱାରା 'ପଞ୍ଚୋପଚାର'ରେ ପୂଜା ହୋଇଥାଏ ।

ଅତୀତରେ ଗୋପାଳବଲ୍ଲଭ ଭୋଗରେ ନଡ଼ିଆ କୋରା, ଖୁଆ ମଣ୍ଡା, ମାଖନ, ଦହି, ରାବିଡ଼ି, ସର, ପାଚିଲା କଦଳୀ, ଚାଉଳିଆ, ପାଗ ଖଇ, ପଇଡ଼ ଇତ୍ୟାଦି ଅନେକ ଭୋଗ ଦ୍ରବ୍ୟ ପନ୍ତିରେ ଲାଗୁଥିଲା । କିନ୍ତୁ ବିଗତ ଅନେକ ବର୍ଷ ଧରି ତଥା ମନ୍ଦିର କାର୍ଯ୍ୟାଳୟର ରେକର୍ଡ଼ ମୁତାବକ ସମ୍ପ୍ରତି ବଲ୍ଲଭ ଭୋଗରେ ପୂଜା ହେଉଥିବା ବିଭିନ୍ନ ଭୋଗ ସାମଗ୍ରୀ ମଧ୍ୟରେ-

| | |
|---|---|
| ସାନ ନଡ଼ିଆ କୋରା | - ୨୨୮ଟି |
| ବଡ଼ ନଡ଼ିଆ କୋରା | - ୨୯ଟି |
| ପାଗ ଖଇ | - ୪୪ ଓଳି |
| ପାଚିଲା କଦଳୀ | - ୩ ସରା (୭ ମୂର୍ତ୍ତି) |
| ପାତି ବା ଖୁଦି ନଡ଼ିଆ | - ୩ ସରା |
| ଦହି | - ୪ ବଢ଼ା (ପ୍ରାୟ ୪୦୦ ଗ୍ରାମ୍) |

ଉପରୋକ୍ତ ଭୋଗ ଯୋଗାଇବା ପାଇଁ କେତେକ ନିର୍ଦ୍ଦିଷ୍ଟ ମଠ ମଧ୍ୟରେ ପୁରୀର ଜଗନ୍ନାଥବଲ୍ଲଭ ମଠ, ରାଘବ ଦାସ, ଓଡ଼ିଆ ମଠ ଇତ୍ୟାଦିର ନାମ ସ୍ୱତ୍ୱଲିପିରେ ଉଲ୍ଲେଖ ଥିବା ଜଣାଯାଏ । ସୂଚନାଯୋଗ୍ୟ ଯେ, ଅତୀତରେ ଗୋପାଳବଲ୍ଲଭ ନିମନ୍ତେ ଚାଉଳିଆ (ପିଜୁଳି) ଫଳ ଯୋଗାଇବାର ଦାୟିତ୍ୱ ପୁରୀର 'ଚାଉଳିଆ ମଠ' ଉପରେ ନ୍ୟସ୍ତ ହୋଇଥିଲା । କାଳକ୍ରମେ ଏହି ବ୍ୟବସ୍ଥା ଲୋପ ପାଇ ଯାଇଛି ।

ଦୈନନ୍ଦିନ ଠାକୁରମାନଙ୍କ ବଲ୍ଲଭ ଭୋଗ ଶେଷ ହେବା ପରେ ବଲ୍ଲଭ ଭୋଗ ବଣ୍ଟନ ଫର୍ଦ୍ଦ ଅନୁଯାୟୀ ନୀତି ସମ୍ପୃକ୍ତ ସେବକ ଓ କେତେକ ପାର୍ଶ୍ୱ ଦେବଦେବୀ ମନ୍ଦିରକୁ ପ୍ରତ୍ୟହ ବଲ୍ଲଭ ଭୋଗ ଖେଇ ସ୍ୱରୂପ ଦିଆଯିବା ପରେ ଅବଶିଷ୍ଟ ଭୋଗ ପ୍ରଶାସନ ଦ୍ୱାରା ବାର୍ଷିକ ନିଲାମ ସୂତ୍ରରେ ନେଇଥିବା ଜନୈକ ବ୍ୟକ୍ତି ଆନନ୍ଦ ବଜାର ଠାରେ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଏହି ଭୋଗକୁ ବିକ୍ରୟ କରିଥାନ୍ତି । ଉଲ୍ଲେଖଯୋଗ୍ୟ ଯେ, ସମ୍ପ୍ରତି ପ୍ରଶାସନ ପକ୍ଷରୁ ପ୍ରତ୍ୟେକରୁ ୨୦ଟି ଲେଖାଏଁ ଖୁଆ ମଣ୍ଡା, ରାବିଡ଼ି, ସର, ଦହି ପ୍ରତିଦିନ ବଲ୍ଲଭ ଭୋଗ ପୂଜା ସରିବା ପରେ ଶ୍ରୀମନ୍ଦିରର ଜଗମୋହନରେ ଜଣେ ପୂଜାପଣ୍ଡାଙ୍କ ଦ୍ୱାରା ସର୍ପାମଣୋହି (ସମର୍ପଣ) କରାଯିବା ପରେ ଶ୍ରୀମନ୍ଦିର କାର୍ଯ୍ୟାଳୟ ଦ୍ୱାରା ନିଯୁକ୍ତ ଜଣେ ସେବକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଉକ୍ତ ସମସ୍ତ ଭୋଗକୁ ଗାରଦ ଅଫିସ୍ ନିକଟରେ ସର୍ବସାଧାରଣ ଉଦ୍ଦେଶ୍ୟରେ ବିକ୍ରୟ କରାଯାଇ ଲବ୍ଧ ଅର୍ଥକୁ ଶ୍ରୀମନ୍ଦିର ଅଫିସ୍‌ରେ ଦାଖଲ କରାଯାଏ । ବର୍ତ୍ତମାନ ଖୁଆ ମଣ୍ଡା ଗୋଟା ପ୍ରତି ୫ ଟଙ୍କା, ରାବିଡ଼ି ଓଳି ପ୍ରତି ୮ ଟଙ୍କା, ସର ଓଳି ପ୍ରତି ୧୦ ଟଙ୍କା ଓ ଦହି ଓଳି ପ୍ରତି ୪ ଟଙ୍କା ଦର ଧାର୍ଯ୍ୟ ହୋଇଅଛି । ଗତ ଦୁଇ/ତିନି ବର୍ଷ ଧରି ୨୦ଟି ସେଟ୍ ଖୁଆ ମଣ୍ଡା, ସର, ରାବିଡ଼ି ଭୋଗ ଲାଗୁଅଛି ।

ଗବେଷକମାନଙ୍କ ମତରେ ଶ୍ରୀମନ୍ଦିରରେ ପ୍ରଚଳିତ ଏହି ଗୋପାଳବଲ୍ଲଭ ଭୋଗ ଅତ୍ୟନ୍ତ ପ୍ରାଚୀନ ସମୟର । ଏପରିକି ଯଯାତି କେଶରୀଙ୍କ ସମୟରେ ଏହି ଭୋଗର ପ୍ରଚଳନ ହୋଇଥିଲା ବୋଲି କେହି ମତ ପ୍ରଦାନ କରିଥାନ୍ତି । କାରଣ ଅନ୍ନ ଭୋଗର ପ୍ରଚଳନ ପୂର୍ବରୁ ଶ୍ରୀମନ୍ଦିରରେ ଠାକୁରମାନଙ୍କୁ କେବଳ ବଲ୍ଲଭ ଭୋଗ କରା ଯାଉଥିଲା ।



# ସକାଳ ଧୂପ

ଗୋପାଳବଲ୍ଲଭ ଭୋଗ ଶେଷ ପରେ ସକାଳ ଧୂପ ନୀତି ଅନୁଷ୍ଠିତ ହୋଇଥାଏ । ରତ୍ନସିଂହାସନରେ ବିରାଜିତ ଶ୍ରୀବିଗ୍ରହମାନଙ୍କର ପ୍ରଥମ ଅନ୍ନଭୋଗ ହେଉଛି 'ସକାଳ ଧୂପ' । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି (Record of Rights) ବର୍ଣ୍ଣିତ ପ୍ରକାରେ ସକାଳ ଧୂପ ବା ରାଜ ଭୋଗ ଦିବା ୧୦ ଘଣ୍ଟା ସମୟରେ ହେବାର ନିୟମ । ସେହିପରି ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକା ଅନୁଯାୟୀ ସକାଳ ଧୂପର ନିର୍ଦ୍ଧାରିତ ସମୟ ଦିବା ୧୧ ଘଣ୍ଟାରୁ ୧୨ ଘଣ୍ଟା ।

ସକାଳ ଧୂପ ବା ରାଜ ଭୋଗରେ ପ୍ରାୟ ୧୭ ପ୍ରକାରର ଭୋଗ ନୈବେଦ୍ୟ ହୋଇଥାଏ । ୧୯୧୦ ମସିହା ସକାଳ ଧୂପ ତାଲିକା ପ୍ରକାରେ ନିମ୍ନ ପ୍ରକାରର ଭୋଗ ସାମଗ୍ରୀ ପନ୍ତିରେ ଲାଗୁଥିଲା ।

| | ଭୋଗର ନାମ | ପରିମାଣ |
|---|---|---|
| ୧. | ବଡ଼କାନ୍ତି ବିରି | ୮ ସରା (୧୬ ଗୋଟା) |
| ୨. | ମାଠ ପୁଳି | ୧୨ |
| ୩. | ସାନ କାନ୍ତି | ୧୨ |
| ୪. | ଚଣ୍ଡ ମାଠ ପୁଳି | ୯ |
| ୫. | ହଂସ କେଳି | ୪ |
| ୬. | କାକତୁଆ ଝିଲ୍ଲି | ୧ |
| ୭. | ଅଦା ପାଚିଡ଼ି | ୩ |
| ୮. | ଏଣ୍ଡୁରି | ୧୨ |
| ୯. | ଶାଗ | ୫ ଓଳି |
| ୧୦. | ଥାଳି ଖେଚୁଡ଼ି | ୨୦ କୁଡୁଆ |
| ୧୧. | ନୁଖୁରା ଖେଚୁଡ଼ି | ୯ କୁଡୁଆ |
| ୧୨. | ଅଙ୍ଗବାସ ଓଳି ଖେଚୁଡ଼ି | ୪ କୁଡୁଆ |
| ୧୩. | ସାନ ଓଳି ଖେଚୁଡ଼ି | ୨ କୁଡୁଆ |
| ୧୪. | କାନିକା | ୪ କୁଡୁଆ |
| ୧୫. | ପିଠା ପୁଳି | ୪ |
| ୧୬ | ବୁନ୍ଦିଆ ଖିରୀ | ୧ |

ଏତଦ୍‌ବ୍ୟତୀତ ରେକର୍ଡ଼ ଅଫ୍ ରାଇଟସ୍ (ସ୍ୱତ୍ୱଲିପି) ପ୍ରସ୍ତୁତ ବେଳେ ଅର୍ଥାତ୍ ୧୯୫୨ ମସିହା ବେଳେ ସକାଳ ଧୂପ ସମୟରେ ହେଉଥିବା ଭୋଗ ତାଲିକା ପ୍ରଦତ୍ତ କରାଗଲା ।

| | ଭୋଗର ନାମ | ପରିମାଣ |
|---|---|---|
| ୧. | କାନିକା | ୩ କୁଡୁଆ |
| ୨. | ତାଟ ଖେଚୁଡ଼ି | ୩ |
| ୩. | ନୁଖୁରା ଖେଚୁଡ଼ି | ୩ |
| ୪. | ମେଣ୍ଢା ମୁଣ୍ଡିଆ | ୧ |
| ୫. | ବଡ଼ କାନ୍ତି | ୫ ସରା |
| ୬. | ସାନ କାନ୍ତି | ୧୨ |
| ୭. | ମାଠ ପୁଳି | ୬ |
| ୮. | ହଂସ ପୁଳି | ୨ |
| ୯. | ପିଠା ପୁଳି | ୪ |
| ୧୦. | ଚଣ୍ଡ ପୁଳି | ୯ |
| ୧୧. | ଝିଲି | ୪ |
| ୧୨. | ଏଣ୍ଡୁରି | ୬ |
| ୧୩. | ଅଦା ପାଚିଡ଼ି | ୩ |
| ୧୪. | ଶାଗ | ୫ |
| ୧୫. | ଭଜା | ୧ ସରା |

ସମ୍ପ୍ରତି ଏହି ଭୋଗର ନାମ ଓ ପରିମାଣ ନିମ୍ନ ପ୍ରକାରେ ହେଉଅଛି ।

## ସକାଳ ଧୂପ (କୋଠ ଭୋଗ) ତାଲିକା

| | | |
|---|---|---|
| ୧. | ଥାଳି ଖେଚେଡ଼ି | - ୧୪ କୁଡୁଆ |
| ୨. | ତ୍ଵାଟ ଖେଚେଡ଼ି | - ୩ କୁଡୁଆ |
| ୩. | ମଜୁରି ଖେଚେଡ଼ି | - ୩ କୁଡୁଆ |
| ୪. | କାନିକା | - ୩ କୁଡୁଆ |
| ୫. | ନୁଖୁରା ଖେଚେଡ଼ି | - ୪ କୁଡୁଆ |
| ୬. | ଖେଚେଡ଼ି ଓଳି ବଡ଼ା | - ୯ |
| ୭. | ବଡ଼ କାନ୍ତି | - ୫ ସରା |
| ୮. | ସାନ କାନ୍ତି | - ୩ ସରା (୧୨ଟା) |
| ୯. | ମାଠ ପୁଳି | - ୬ ଟା |
| ୧୦. | ହଂସ କେଳି | - ୨ ସରା |
| ୧୧. | ପିଠା ପୁଳି | - ୪ ସରା |
| ୧୨. | ଚଣ୍ଡ ମାଠ ପୁଳି | - ୯ଟା |
| ୧୩. | ଝିଲି | - ୪ ଟା |

୧୪. ଏଣ୍ଡୁରୀ -୬ଟା
୧୫. ଅଦା ପାଚେଡ଼ି -୩
୧୬. ଶାଗ -୫ ଓଳି
୧୭. ଭଜା - ୧ ଘରା

ସକାଳ ଧୂପ ନୀତି ପାଇଁ ଥାଳି ଓ ପରଖ, ମୁରୁଜ ଗୁଣ୍ଡ, ପାଣି ଝରୀ, ଆସନ (ପିଢ଼ା), ଷୋଡ଼ଶ ଉପଚାର ସାମଗ୍ରୀ ଯଥା : (ଅଳାଇଚ, ଯବ ଧାନ, ଲବଙ୍ଗ, ଗୁଡ଼, ପଇତା ଓ ପାତ୍ର ସଜ ଇତ୍ୟାଦି), ମାଳ, ତୁଳସୀ, ୩ ଗୋଟି ସୁନା ପଦକ, ପୂଜା ଦଣ୍ଡ, ଘଷା ଜଳ, ତିନିଗୋଟି ଦର୍ପଣ, ବିଡ଼ିଆ ଇତ୍ୟାଦି ଜିନିଷାଦ୍ ଆବଶ୍ୟକ ପଡ଼ିଥାଏ । ଏତଦ୍‌ବ୍ୟତୀତ ଏହି ନୀତିରେ ଅନେକ ସେବକ ସମ୍ପୃକ୍ତ ରହିଥାନ୍ତି । ତନ୍ମଧ୍ୟରେ (୧) ସୁଆରବଡ଼ୁ (୨) ଧୁକୁଡ଼ିଦ୍ୱାର ପ୍ରତିହାରୀ (୩) ପାଣିଆପଟ (୪) ପ୍ରଧାନୀ (୫) ପୂଜାପଣ୍ଡା (୬) ପ୍ରତିହାରୀ (୭) ପାଳିଆ ମହାସୁଆର (୮) ପନ୍ତିବଡ଼ୁ (୯) ରୋଷ ପାଇକ (୧୦) ପାଳିଆ ପତ୍ରି (୧୧) ଗରାବଡ଼ୁ (୧୨) ଚାଙ୍ଗଡ଼ା ମେକାପ (୧୩) ମୁଦୁଲି (୧୪) ଚନ୍ଦନ ଘଟୁଆରୀ (୧୫) ସୁଦୁ ସୁଆର (୧୬) ପାଳିଆ ମେକାପ (୧୭) ପାଳିଆ ଖୁଣ୍ଟିଆ (୧୮) ଝାଞ୍ଜପିଟା ଲୋକ (୧୯) ହଡ଼ପ ନାଏକ (୨୦) ବିଡ଼ିଆ ଯୋଗାଣିଆ (୨୧) ପୁରାଣ ପଣ୍ଡା (୨୨) ଗୋଚ୍ଛିକାର (୨୩) ଦକ୍ଷିଣି ଦ୍ୱାର ପ୍ରତିହାରୀ (୨୪) ଘଣ୍ଟୁଆ (୨୫) ବଜନ୍ତ୍ରୀ ପ୍ରମୁଖ ସେବକମାନେ ଅନ୍ୟତମ ।

ସକାଳ ଧୂପ ନିମନ୍ତେ ଯେତେ ପାଣି ଆବଶ୍ୟକ ପଡ଼ିଥାଏ ତାହା ପାଣିଆପଟ ସେବକ ବିମଳା ମନ୍ଦିର ସମ୍ମୁଖରେ ଥିବା କୂଅରୁ ଆଣି ଯୋଗାଇଥାଏ । ସୂଚନାଯୋଗ୍ୟ ଯେ, ଶ୍ରୀବିଗ୍ରହମାନଙ୍କ ନିମନ୍ତେ ପ୍ରତିଦିନ ଅନୁଷ୍ଠିତ ହେଉଥିବା କୋଠ ଭୋଗର ସମସ୍ତ ଜିନିଷାଦ୍ ଓ କଞ୍ଚା ଦ୍ରବ୍ୟ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଯୋଗାଇ ଦିଆ ଯାଇଥାଏ । କୋଠ ଭୋଗ ବା ରାଜ ଭୋଗ ନିମନ୍ତେ ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ମହାଲକ୍ଷ୍ମୀ ମନ୍ଦିରର ପଛ ପାର୍ଶ୍ୱରେ ଥିବା କୋଠ ଭୋଗ ଗୋଦାମରୁ ନିର୍ଦ୍ଦିଷ୍ଟ ପରିମାଣର ଜିନିଷମାନ ପ୍ରତ୍ୟହ ଯୋଗାଣିଆ (ଗନ୍ଧଣ) ମେକାପଙ୍କ ଜରିଆରେ ରୋଷ ଘରକୁ ଯାଇଥାଏ । ଏହା ଅମୀନ ମହାସୁଆରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପାଳିଆ ମହାସୁଆରମାନଙ୍କ ଦ୍ୱାରା ଶ୍ରୀମନ୍ଦିର କୋଠ ଭୋଗ ରୋଷରେ ବିଭିନ୍ନ ପ୍ରକାର ଭୋଗ ସାମଗ୍ରୀ ପ୍ରସ୍ତୁତ ହୋଇଥାଏ ।

ସକାଳ ଧୂପ ପୂଜା ପୂର୍ବରୁ ସୁଆରବଡ଼ୁ ଭିତର ପୋଖରିଆ (ଗମ୍ଭୀରା) ଠାରୁ ଭିତର ଅର୍ଗଳି (ବଲ୍ଲଭ ପିଣ୍ଡି ଶେଷ) ପର୍ଯ୍ୟନ୍ତ ପାଣି ପକାଇ ଧୋଇଥାନ୍ତି । ତତ୍ପରେ ଉକ୍ତ ସେବକ ଅହ୍ଲୋଣିଆ ପାଣି ପକାଇଥାନ୍ତି । ପାଣିଆପଟ ୫ ଗୋଟି ଥାଳି ଓ ଗୋଟିଏ ପରଖ ଧୋଇ ସୁଆରବଡ଼ୁଙ୍କୁ ଦେଇଥାନ୍ତି । ସୁଆରବଡ଼ୁ ତାହା ଆଉଥରେ ପରିଷ୍କାର କରି ତିନି ଠାକୁରଙ୍କ ସମ୍ମୁଖରେ ତିନି ଜାଗାରେ ଓ ସୁଦର୍ଶନଙ୍କ ପାଖରେ ଗୋଟିଏ ପକାଇଥାନ୍ତି । ଏହି ସମୟରେ ପ୍ରତିହାରୀ ସେବକ 'ଭିତର ଟେରା' ଭିତର କବାଟ (କଳାହାଟ ଦ୍ୱାର)

ପାଖରେ ବାନ୍ଧେ । ଉଲ୍ଲେଖଯୋଗ୍ୟ ଯେ, ବଲ୍ଲଭ ପୂଜା ସମୟରେ ଭିତର କାଠ ପାଖରେ ବନ୍ଧା ହୋଇଥିବା ଟେରା ସକାଳ ଧୂପ ସରିବା ପର୍ଯ୍ୟନ୍ତ ଥାଏ । ସୁଆରବଡୁ ଥାଳି ପକାଇବା ପରେ ପ୍ରଧାନୀ ସେବକ ଜଣେ ପାଳିଆ ପୂଜାପଣ୍ଡାଙ୍କୁ ଡାକିଥାନ୍ତି । ପ୍ରଧାନୀ ସେବକଙ୍କ ଅନୁପସ୍ଥିତିରେ ସେହି କାର୍ଯ୍ୟ ମନ୍ଦିର ଚର୍ଚ୍ଚା କର୍ମଚାରୀଙ୍କ ଦ୍ୱାରା କରା ଯାଇଥାଏ । ପୂଜାପଣ୍ଡା ଆସି ବଳଭଦ୍ରଙ୍କ ଠାରୁ ଆରମ୍ଭ କରି ସୁଦର୍ଶନଙ୍କ ପର୍ଯ୍ୟନ୍ତ ଯେଉଁ ଥାଳି ପଡ଼ିଥାଏ, ତାହାର ବାହାର ସୀମାରେ ମୁରୁଜ ବୁଲାଇ ପନ୍ତି କାଟନ୍ତି । ଏତଦ୍‌ବ୍ୟତୀତ ଲକ୍ଷ୍ମୀଙ୍କ ପାଖରେ ଗୋଟିଏ ଛୋଟ ପନ୍ତି ହୁଏ । ଉଲ୍ଲେଖଯୋଗ୍ୟ ଯେ, ଭୋଗ ମୁରୁଜ କଟା ସୀମା ଭିତରେ ରହିଲେ ମହାପ୍ରସାଦ ହୁଏ । ବାହାରେ ରହିଲେ ତାହା ଶଙ୍ଖୁଡ଼ି ରୂପେ କଥିତ ହୁଏ । ଏହି ପନ୍ତି ଭିତରେ ଭୋଗ ଥୋଇବାକୁ ଅନେକ ମଠର ସନନ୍ଦ ପାଇଥିବା ଲୋକଙ୍କର ଭୋଗ ରହିବାର ନିୟମ । ମୁରୁଜ ପଡ଼ିବା ପରେ ପ୍ରତିହାରୀ ସେବକ ଶ୍ରୀଛାମୁରେ ଜଣାଇ ବେତ ଧରି ପ୍ରଧାନୀ ସେବକଙ୍କ ସହ କୋଠ ଭୋଗ ରୋଷକୁ ଭୋଗ ଡାକିବା ପାଇଁ ଯାଇଥାନ୍ତି । ଏହି ସମୟରେ ଦକ୍ଷିଣ ଦୁଆର ପ୍ରତିହାରୀ ଦ୍ୱାର ଜଗିଥାନ୍ତି । ଭୋଗ ଡାକିବା ଠାରୁ ଶେଷ ହେବା ପର୍ଯ୍ୟନ୍ତ ଧୁକୁଡ଼ି ଦ୍ୱାର ଓ ଦକ୍ଷିଣି ଦ୍ୱାର ଠାରେ ପ୍ରତିହାରୀ ସେବକ ଓ ମନ୍ଦିର ପୋଲିସ ଜଗି ରହିଥାନ୍ତି । ଭୋଗ ପୂଜା ସମୟରେ ସର୍ବସାଧାରଣଙ୍କୁ ଏହି ଦ୍ୱାର ବାଟେ ଭିତରକୁ ଛଡ଼ା ଯାଇ ନଥାଏ । ପ୍ରଥମେ କୋଠ ଭୋଗ ରୋଷରୁ ମହାସୁଆର ଦୁଇ ସରା କାନ୍ତି ପିଠା ଓ ଅଦା ପାଚିଡ଼ି ଧରି ଆସିଥାନ୍ତି । ଏହାକୁ ଶ୍ରୀମନ୍ଦିର ଚଳଣୀରେ "ପ୍ରଥମ ଛେକ ଆସିଲା" ବୋଲି କୁହାଯାଏ । ତାଙ୍କ ପଛେ ପଛେ ପନ୍ତିବଡୁ ସେବକ ସକାଳ ଧୂପ ଖେଚେଡ଼ି କୁଡୁଆ ଧରି ରୋଷ ପାଇକ ସହ ଗମ୍ଭୀରା ଭିତରକୁ ଆସିଥାନ୍ତି । ରୋଷ ପାଇକ କୁଆ ଇତ୍ୟାଦି ବାରଣ କରିବାକୁ କାଠ ଖଣ୍ଡିଏ ଧରିଥାନ୍ତି । ଏହି କାଠ ଖଣ୍ଡିକ ପରେ ସେ ପ୍ରାପ୍ୟ ସ୍ୱରୂପ ପାଇଥାନ୍ତି । ମହାସୁଆର ଆଣିଥିବା ଜିନିଷମାନ ପ୍ରତ୍ୟେକ ଥାଳିରେ ସିଂହାସନ ତଳେ ରଖିଥାନ୍ତି । ରୋଷ ପାଇକ ତାହା ସବୁ ଥାଳିରୁ କାଢ଼ି ତଳେ ଥୋଇଥାଏ । ପନ୍ତିବଡୁ ସବୁ ଥାଳିରେ କୁଡୁଆରୁ ବାଢ଼ିଥାନ୍ତି । ଏହାପରେ ଅନ୍ୟାନ୍ୟ ଭୋଗ ସବୁ ପନ୍ତିକୁ ଆସେ । ପାଳିଆ ପତ୍ରୀ ପୂଜା ଠା' କରି ରଖେ । ଗରାବଡୁ ତିନି ଜଣ ପୂଜାପଣ୍ଡାଙ୍କ ପାଖରେ ଗୋଟିଏ ଗୋଟିଏ କରି ୩ଟି ପାଣି ଝରି ଲଗାଏ । ସୁଆରବଡୁ ପୂଜାପଣ୍ଡାଙ୍କ ଆସନ ସ୍ୱରୂପ ୩ ଖଣ୍ଡ ନୂଆ କନା ପାହାଡ଼ା ପକାଏ । ଏଥି ସକାଶେ ମନ୍ଦିର ପ୍ରଶାସନ ତରଫରୁ ଚାଙ୍ଗଡ଼ା ମେକାପଙ୍କ ଜିମାରେ ଏହି କନା ରଖାଯାଇଥାଏ । ଏହାପରେ ପ୍ରଧାନୀ ସେବକ ପୂଜାପଣ୍ଡାଙ୍କୁ ପୂଜା କରିବା ପାଇଁ ଡାକିଥାନ୍ତି । କିନ୍ତୁ ପ୍ରକୃତ ପକ୍ଷେ ଅନେକ ବର୍ଷ ଧରି ଏହି କାର୍ଯ୍ୟ ମନ୍ଦିର ଚର୍ଚ୍ଚା କର୍ମଚାରୀମାନଙ୍କ ଦ୍ୱାରା କରା ଯାଉଅଛି । ତତ୍ପରେ ତିନିଜଣ ପୂଜାପଣ୍ଡା ସିଂହାସନ ଉପରେ ବସି ପୂଜା ଆରମ୍ଭ କରିଥାନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଘୋଡ଼ ଲାଗି ସମୟରେ ଅର୍ଥାତ୍ ଓଡ଼ଣ ଷଷ୍ଠୀ ଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ପଣ୍ଡାମାନେ ସିଂହାସନ ତଳେ ବସି ପୂଜା କରନ୍ତି ଓ ଅନ୍ୟ ସମୟରେ ସିଂହାସନ ଉପରେ ବସି ପୂଜା କରିଥାନ୍ତି ।

ସକାଳ ଧୂପ ପୂଜା ସମୟରେ ପତ୍ରିବଡୁ ମୁଦୁଲି ସେବକ ଠାରୁ ପାତ୍ର ସଜ (ପୂଜା କରିବା ପାଇଁ ଅଠର ମୂର୍ତ୍ତି ରୂପା ଗିନା, ସାତ ମୂର୍ତ୍ତି ରୂପା କଳସ) ଓ ପିତଳ ଥାଳିରେ ପୂର୍ବ ବର୍ଣ୍ଣିତ ପୂଜା ଉପଚାରମାନ ଭିତରକୁ ନେଇ ପୂଜାପଣ୍ଡାମାନଙ୍କୁ ଯୋଗାଇ ଦେଇଥାନ୍ତି । ସ୍ୱତ୍ୱଲିପି ମୁତାବକ ରତ୍ନସିଂହାସନାଧିଷ୍ଠିତ ଶ୍ରୀବଳଭଦ୍ରଙ୍କୁ ବାସୁଦେବ ମନ୍ତ୍ର, ଶ୍ରୀସୁଭଦ୍ରାଙ୍କୁ ଭୁବନେଶ୍ୱରୀ ମନ୍ତ୍ର, ଶ୍ରୀଜଗନ୍ନାଥଙ୍କୁ ନାରାୟଣ ମନ୍ତ୍ର ଓ ଶ୍ରୀସୁଦର୍ଶନଙ୍କୁ ଗୋପାଳ ମନ୍ତ୍ରରେ ପୂଜା କରାଯିବା ସହିତ ଶ୍ରୀଲକ୍ଷ୍ମୀଙ୍କୁ ଲକ୍ଷ୍ମୀ ମନ୍ତ୍ର ଓ ସରସ୍ୱତୀଙ୍କୁ ବିଶ୍ୱାଧାତ୍ରୀ ମନ୍ତ୍ରରେ ପୂଜା କରା ଯାଇଥାଏ । ତିନି ଜଣ ପୂଜାପଣ୍ଡାଙ୍କ ମଧ୍ୟରୁ ଜଣେ ବଳଭଦ୍ର ଓ ଅନ୍ୟ ଜଣେ ସୁଭଦ୍ରାଙ୍କ ବାଡ଼ରେ ପୂଜା କରୁଥିବା ବେଳେ ତୃତୀୟ ପୂଜାପଣ୍ଡା ଜଗନ୍ନାଥ, ସୁଦର୍ଶନ, ଲକ୍ଷ୍ମୀ ସରସ୍ୱତୀ ଓ ମାଧବଙ୍କ ପୂଜା କରିଥାନ୍ତି । ସକାଳ ଧୂପ ବା ରାଜ ଧୂପ ପୂଜା ଷୋଡ଼ଷ ଉପଚାରରେ ହୋଇଥାଏ । ପୂଜା ସମୟରେ ଗୋଛିକାର ଓ ପ୍ରତିହାରୀ ସେବକଗଣ ଜୟ ବିଜୟ ଦ୍ୱାର ଠାରେ ଜଗି ରହିଥାନ୍ତି । ଘଣ୍ଟୁଆ ଓ ବଜନ୍ତ୍ରୀ ସେବକମାନେ ଘଣ୍ଟ ଓ ବାଜା ବଜାନ୍ତି । ପୂଜା ବଢ଼ିବା (ଶେଷ ହେବା) ସମୟରେ ପତ୍ରିବଡୁ ପାଳିଆ ସେବକ ଯଥା ପରୀକ୍ଷାବଡୁ, ପାଳିଆ ମେକାପ, ଚାଙ୍ଗଡ଼ା ମେକାପ ଓ ପାଳିଆ ଖୁଣ୍ଟିଆଙ୍କୁ ଡାକିଥାନ୍ତି । ପରୀକ୍ଷାବଡୁ ତିନିଗୋଟି ଦର୍ପଣ ଯାହାକି ଅବକାଶ ସମୟରେ ବ୍ୟବହୃତ ହୁଏ, ତାହା ନେଇ ଠାକୁରମାନଙ୍କ ସାମନାରେ ରଖେ ଓ କ୍ରମାନ୍ୱୟରେ ଦିଅଁଙ୍କ ସାମନାରେ ଧରେ । ଖୁଣ୍ଟିଆ ସେବକ ମାଳ ତୁଳସୀ ଯୋଗାଇଥାନ୍ତି । ପାଳିଆ ମେକାପ ତିନିଗୋଟି ସ୍ୱର୍ଣ୍ଣ ପଦକ ଭଣ୍ଡାର ମେକାପ ପାଖରୁ ନେଇ ଯୋଗାଇଥାନ୍ତି । ଚାଙ୍ଗଡ଼ା ମେକାପ ୩ ଖଣ୍ଡ ବସ୍ତ୍ର ଯୋଗାଏ । ସୁଆରବଡୁ ରୋଷରୁ ନିଆଁ ଆଣିଥାନ୍ତି ଓ ତିନିଗୋଟି ପିତଳ ଦୀପାଳିରେ ଗୋଗୁଳ, ଚନ୍ଦନଗୁଣ୍ଡ ଓ ନିଆଁ ରଖି ଧୂପ ପ୍ରସ୍ତୁତ କରି ଭିତରେ ଯୋଗାଇଥାନ୍ତି । ଧୂପ ନୈବେଦ୍ୟ ଶେଷ ହେଲେ ପାଳିଆ ପତ୍ରି ସେହି ଦୀପାଳିରେ ବଳିତା ଦେଇ ଦୀପ ଦିଏ । ଗରାବଡୁ ଘସା ଜଳ ଦେବା ପରେ ପାଳିଆ ମହାସୁଆର ପନ୍ତିରେ ଲଗାନ୍ତି । ସ୍ୱତ୍ୱଲିପିର ବର୍ଣ୍ଣିତ ପ୍ରକାରେ ମହାସୁଆର କେବଳ ପନ୍ତି ଛୁଇଁ ପାରିବେ । ପୂଜା ବଢ଼ି ଦୀପ ଦେଲା ପରେ ପ୍ରତିହାରୀ ଭିତର ଦ୍ୱାର (କଳାହାଟ ଦ୍ୱାର) ବନ୍ଦ କରେ । ଏହାକୁ 'ଟେରା ପଡ଼ିବା' କହନ୍ତି । ସୂଚନାଯୋଗ୍ୟ ଯେ, ପୂଜାପଣ୍ଡାମାନେ ଠାକୁରଙ୍କୁ ଭୋଗ ମଣୋହି କଲାବେଳେ ସେଠାରେ ମହାସୁଆର, ପତ୍ରିବଡୁ, ସୁଆରବଡୁ ଓ ଗରାବଡୁ ଛଡ଼ା ଅନ୍ୟ କେହି ଗମ୍ଭୀରା ଭିତରେ ରହିପାରିବେ ନାହିଁ । ପୂଜାପଣ୍ଡାମାନେ ପାଳିଆ ମହାସୁଆରକୁ ସବୁ ଠିକ୍ ଅଛି କି ନାହିଁ ପଚାରି ଭିତରେ ଠାକୁରଙ୍କୁ ମଣୋହି କରାନ୍ତି । ଏହି ସମୟରେ ବାହାରେ ଝାଞ୍ଜ ପିଟା ହୁଏ ।

ଅତୀତରେ ସକାଳ ଧୂପ ଟେରା ପଡ଼ିବା ସମୟରେ ଜଗମୋହନସ୍ଥିତ ଗରୁଡ଼ ଆଗରେ ପଟୁଆର ହେଉଥିଲା । ପଟୁଆରରେ ରାଜଗୁରୁ (ପରୀକ୍ଷା) ସେଠାରେ ଠିଆ ହୁଅନ୍ତି ଓ ପ୍ରଧାନୀ ସେବକ ଭଣ୍ଡାର ଘରୁ ସୁନାବେତ ନେଇ ରାଜଗୁରୁଙ୍କ ହାତରେ ଦିଅନ୍ତି । ପାଳିଆ ମାହାରୀ (ଦେବଦାସୀ) ସେଠାରେ ନୃତ୍ୟ କରୁଥିଲେ । ମାଦେଳି ସେବକ ପାଳିଆ ମାହାରୀ

ପାଖରେ ଠିଆ ହୋଇ ମାଦଳ ବଜାଏ । ଦୀର୍ଘ ଅନେକ ବର୍ଷ ଧରି ଏହି ପରମ୍ପରା ଶ୍ରୀମନ୍ଦିରରେ ସକାଳ ଓ ଅନ୍ୟାନ୍ୟ ଧୂପରେ ଅନୁସୃତ ହେଉନାହିଁ । କେବଳ ପୁରାଣ ପଣ୍ଡା ସେବକ ଅଣସର ପିଣ୍ଡି ଠାରେ ଭାଗବତ ଗୀତା ପୁରାଣ ପାଠ କରୁଅଛନ୍ତି । ଏତଦ୍‌ବ୍ୟତୀତ ଜନୈକ ବ୍ୟକ୍ତି (ବାବାଜୀ) ଦୁଇ ହାତରେ ଝାଞ୍ଜ ଧାରଣପୂର୍ବକ ବଜାଇ ବଜାଇ ଜଗମୋହନରୁ ବାହାରି ଭିତର ବେଢ଼ାସ୍ଥ ବଟବୃକ୍ଷ, ମୁକ୍ତିମଣ୍ଡପ, ବିମଳା, ଲକ୍ଷ୍ମୀ ମନ୍ଦିର ଇତ୍ୟାଦି ପରିକ୍ରମା କରି ପୁନଶ୍ଚ ଜଗମୋହନସ୍ଥିତ ଗରୁଡ଼ ସ୍ତମ୍ଭ ନିକଟକୁ ଫେରି ଆସିଥାନ୍ତି । ସାଧାରଣତଃ ମନ୍ଦିର ପରମ୍ପରା ଅନୁଯାୟୀ ଝାଞ୍ଜ ଗରୁଡ଼ ସ୍ତମ୍ଭଙ୍କ ନିକଟରେ ପହଞ୍ଚିବା ପରେ ଟେରା ଫିଟି କଳାହାଟ ଦ୍ୱାର ଖୋଲା ଯାଇଥାଏ ।

ରତ୍ନସିଂହାସନ ନିକଟରେ ଅନୁଷ୍ଠିତ ହେଉଥିବା ସକାଳ ଧୂପ ପୂଜା ସରିଲେ ପତ୍ରିବଡୁ ଭିତରୁ ବାହାର ଦୁଆର ପାଖରେ ହଡ଼ପ ନାୟକଙ୍କୁ ଡାକିଥାନ୍ତି । ଏହାପରେ ପ୍ରତିହାରୀ ଦୁଆର ଫିଟାନ୍ତି । ଏହାକୁ 'ଟେରା ଫିଟିଲା' ବୋଲି କୁହା ଯାଇଥାଏ । ବିଡ଼ିଆ ଯୋଗାଣିଆ ଶ୍ରୀମନ୍ଦିର ମୁକ୍ତିମଣ୍ଡପର ପଛ ପାର୍ଶ୍ୱରେ ଥିବା ଏକ ସ୍ୱତନ୍ତ୍ର ବିଡ଼ିଆ ଯୋଗାଣିଆ ଘରେ ବିଡ଼ିଆ ପାନ ପ୍ରସ୍ତୁତ କରିଥାନ୍ତି, ଯେଉଁଥିରେ କି ପାନ, ଅଳାଇଚ, ଲବଙ୍ଗ, ଶୁଖିଲା ଗୁଆ, କର୍ପୂର ଓ ଯାଇପତ୍ରି ଇତ୍ୟାଦି ପଡ଼ିଥାଏ । ହଡ଼ପ ନାୟକ ବନ୍ଧା ବିଡ଼ିଆ ପାନ ତିନି ଠାକୁରଙ୍କ ପାଖରେ ରୂପା ବଟାରେ ଦିଅନ୍ତି । ପୂଜାପଣ୍ଡା ଠାକୁରଙ୍କୁ ବିଡ଼ିଆ ମଣୋହି କରନ୍ତି ଓ ପାଳିଆ ମେକାପ କର୍ପୂର ଦେବାପରେ କର୍ପୂର ଆଳତି କରନ୍ତି । ତତ୍ପରେ ଅଖଣ୍ଡ ମେକାପ ୨୧ ବତୀ ଆଳତି ବଢ଼ାଇଥାନ୍ତି ଓ ପୂଜାପଣ୍ଡା ୨୧ ବତୀ ଆଳତି କରିଥାନ୍ତି । ଆଳତି ପରେ ପୂଜାପଣ୍ଡାମାନେ ପୂଜା ସମୟରେ ଲାଗି କରିଥିବା ସୁନା ପଦକ ୩ ଗୋଟି ମଇଲମ କରି ମେକାପ ଜିମାରେ ଦେଇଥାନ୍ତି ଓ ସିଂହାସନରୁ ଓହ୍ଲାଇ ବାହାରକୁ ଚାଲିଯାଆନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆଳତି ପରେ ଭୋଗ ବୁହାଯାଇ ଗମ୍ଭୀରା ଭିତରକୁ ଯିବାପାଇଁ ରାସ୍ତା ଖାଲି ହୁଏ । ଟେରା ପଡ଼ିଥିବା ସମୟରେ ମନ୍ଦିର ପ୍ରଶାସନ ତରଫରୁ ବିକ୍ରୟ କରା ଯାଇଥିବା ପରିମାଣିକ ଟିକେଟଧାରୀ ବ୍ୟକ୍ତିମାନେ ରତ୍ନସିଂହାସନ ନିକଟକୁ ଯାଇ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରିଥାନ୍ତି ।

ସକାଳ ଧୂପ ପୂଜା ସରିଲେ ପୂଜାପଣ୍ଡାମାନେ ଚାଲିଯାନ୍ତି । ପାଳିଆ ପ୍ରତିହାରୀ ପତ୍ରି ଠାରୁ ଭିତରେ ଶଙ୍ଖୁଡ଼ି ଅଛି କି ନାହିଁ ବୁଝନ୍ତି । ପୂଜା ସମୟରେ ହାଣ୍ଡି ଭାଙ୍ଗିଗଲେ ତାହା ଶଙ୍ଖୁଡ଼ି ହୋଇଥାଏ । ଭିତରେ ହାଣ୍ଡି ଭାଙ୍ଗିଥିଲେ ସୁଆରବଡୁ ସେହି ଶଙ୍ଖୁଡ଼ି କାଢ଼େ । ଯଦି ଅଣସର ପିଣ୍ଡିରେ ଭାଙ୍ଗିଥାଏ, ତେବେ ସୁଦ୍ଧ ସୁଆର ସେହି କାର୍ଯ୍ୟ କରିଥାନ୍ତି । ତତ୍ପରେ ବୋଝିଆମାନେ ଭୋଗ ବାହାରକୁ ଆଣିବା ନିମନ୍ତେ ଭିତରକୁ ଯାଇଥାନ୍ତି । ଭୋଗ ଭିତରୁ ଉଠିଯିବା ପରେ ସୁଆରବଡୁ ପାଣି ପକାଇ ଉଭୟ ଗମ୍ଭୀରା ଓ ଅଣସର ପିଣ୍ଡି ପର୍ଯ୍ୟନ୍ତ ସଫା କରିଥାନ୍ତି । ଏହାପରେ ଠାକୁରଙ୍କର ମଇଲମ କରିବା ପାଇଁ ପୁଷ୍ପାଳକ ସେବକମାନଙ୍କୁ ଡକା ଯାଇଥାଏ ।



# ମଇଲମ ଓ ବେଶ

## (ସକାଳ ଧୂପ ପର ମଇଲମ ଓ ବେଶ)

ସାଧାରଣତଃ ପ୍ରତିଦିନ ସକାଳ ଧୂପ ଶେଷ ହେବା ପରେ ଶ୍ରୀମନ୍ଦିର ଗାରଦରୁ ଚର୍ଚ୍ଚା (ପୋଲିସ୍) କର୍ମଚାରୀମାନେ ୩ ଜଣ ପାଳିଆ ପୁଷ୍ପାଳକ, ଚାଙ୍ଗଡ଼ା ମେକାପ, ପାଳିଆ ମେକାପ, ଗରାବଡ୍ଡୁ ଓ ଭୋଗମଣ୍ଡପ ପ୍ରତିହାରୀ ସେବକମାନଙ୍କୁ ଡାକିବା ପାଇଁ ଯାଇଥାନ୍ତି । ସକାଳ ଧୂପ ପରେ ମଇଲମ ଓ ବେଶର ନିର୍ଦ୍ଧାରିତ ସମୟ ହେଉଛି ଦିବା ୧୨ଟାରୁ ମଧ୍ୟାହ୍ନ ୧ ଘଣ୍ଟା ।

ସକାଳ ଧୂପ ସରି ସମସ୍ତ ଭୋଗ ବୁହା ହେବାପରେ ଉକ୍ତ ସ୍ଥାନକୁ ପାଣି ପଡ଼ି ପରିଷ୍କାର ଭାବେ ଧୁଆଯାଏ । ତତ୍ପରେ ପାଳିଆ ଖୁଣ୍ଟିଆଙ୍କ ଉପସ୍ଥିତିରେ ପାଳିଆ ପୁଷ୍ପାଳକମାନେ ଠାକୁରମାନଙ୍କ ମଇଲମ କରିବା ପାଇଁ ଯାଇଥାନ୍ତି । ଏହି ସମୟରେ ଗରାବଡ୍ଡୁ ସେବକ ପାଳିଆ ପୁଷ୍ପାଳକ ସେବକମାନଙ୍କୁ ହାତୁଆଣି (ହାତ ଧୋଇବା ପାଇଁ ପାଣି ବଢ଼ାଇଥାନ୍ତି) ଦେଇଥାନ୍ତି । ପୁଷ୍ପାଳକ ତିନି ଜଣ ସିଂହାସନକୁ ଉଠି ଠାକୁରମାନଙ୍କ ବେଶ (ପାଟବସ୍ତ୍ର ଓ ପୁଷ୍ପ ଇତ୍ୟାଦି) ବଦଳାନ୍ତି ଓ ଅନ୍ୟ ବାର ଲାଗି ପାଟବସ୍ତ୍ର ପିନ୍ଧାଇଥାନ୍ତି । ଏହି ଲୁଗା ଚାଙ୍ଗଡ଼ା ମେକାପ ଆଣି ଦେଇଥାନ୍ତି । ଏତଦ୍‌ବ୍ୟତୀତ ପାଳିଆ ଖୁଣ୍ଟିଆ ଅଧର, ଗୁଣା, ଗଭା ଇତ୍ୟାଦି ପୁଷ୍ପ ଅଳଙ୍କାର ଇତ୍ୟାଦି ବେଶ ନିମିତ୍ତ ପୁଷ୍ପାଳକକୁ ବଢ଼ାଇଥାନ୍ତି । ସୁଆରବଡ୍ଡୁ ଏକ କାଠ ଘୋଡ଼ା (ସିଡ଼ି) ବଢ଼ାଇଥାନ୍ତି । ଏହି କାଠ ଘୋଡ଼ା ଉପରେ ଚଢ଼ି ପୁଷ୍ପାଳକମାନେ ଠାକୁରମାନଙ୍କର ଶିରକାପଡ଼ା ମଇଲମ କରିଥାନ୍ତି । ବେଶ ବଦଳାଇବା ପରେ ପାଳିଆ ପୁଷ୍ପାଳକମାନେ ପାଳିଆ ମେକାପ ଓ ଖୁଣ୍ଟିଆକୁ ଶ୍ରୀଅଙ୍ଗ ମଣାଇ ଦେଇ ଚାଲିଯାଆନ୍ତି ।



# ଭୋଗମଣ୍ଡପ

ଶ୍ରୀଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକାର ଶ୍ରୀଜୀଉଙ୍କ ନୀତି ବିବରଣରେ ଭୋଗ ମଣ୍ଡପରେ ନିରୂପିତ ସମୟ ମଧ୍ୟାହ୍ନ ୧୨ଟା ୩୦ ମିନିଟ୍‌ରୁ ୨ ଘଣ୍ଟା ମଧ୍ୟରେ ହେବ ବୋଲି ଉଲ୍ଲେଖ ରହିଛି । ପ୍ରକୃତ ପକ୍ଷେ ଭୋଗମଣ୍ଡପ ଶ୍ରୀଜୀଉମାନଙ୍କର ନୀତି ମଧ୍ୟରେ ଗଣ୍ୟ ହୋଇ ନପାରେ । କାରଣ ମହାପ୍ରଭୁମାନଙ୍କ କୋଠ ଭୋଗ ବା ରାଜ ଭୋଗ ମଧ୍ୟରେ ଭୋଗମଣ୍ଡପ ଅନ୍ତର୍ଭୁକ୍ତ ନୁହେଁ । କେବଳ ଭୋଗମଣ୍ଡପ ନିମିତ୍ତ ପୂଜା ଉପକରଣ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଯୋଗାଇ ଦିଆ ଯାଇଥାଏ ।

ଶ୍ରୀମନ୍ଦିର ସ୍ୱତ୍ୱଲିପି ମୁତାବକ ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ୧୧ ଘଣ୍ଟା । ବାସ୍ତବରେ ଶ୍ରୀମନ୍ଦିରର ପଞ୍ଜିକାକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ପ୍ରତ୍ୟହ ପ୍ରାୟ ଅପରାହ୍ନ ୩ଟା ୩୦ ମିନିଟ୍ ମଧ୍ୟରେ ଭୋଗମଣ୍ଡପ ପୂଜା ଅନୁଷ୍ଠିତ ହେଉଅଛି । ଏଥିରେ ଯେଉଁ ଭୋଗ ଲାଗେ, ସେଥି ସକାଶେ ମନ୍ଦିର ପାଣ୍ଠିରୁ କୌଣସି ଖର୍ଚ୍ଚ ହୋଇ ନଥାଏ । ଏହି ଭୋଗ ପୁରୀର କେତେକ ମଠବାଡ଼ି ପକ୍ଷରୁ, ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ବରାଦି ଅନୁସାରେ ଓ ସୂପକାରମାନଙ୍କ ତରଫରୁ ବିକ୍ରୟ ଉଦ୍ଦେଶ୍ୟରେ ଭୋଗ ହୋଇଥାଏ । ସ୍ଥଳ ବିଶେଷରେ ଭୋଗମଣ୍ଡପରେ ଦୈନିକ ଲକ୍ଷାଧିକ ଟଙ୍କା ମୂଲ୍ୟର ଅନ୍ନ ଭୋଗ କରା ଯାଇଥାଏ ।

ଭୋଗମଣ୍ଡପ ନୀତି ପାଇଁ ସାଧାରଣତଃ ପୂଜାପଣ୍ଡା (୩ଜଣ) ସେରିକିଆ ଭୋଗମଣ୍ଡପ ପ୍ରତିହାରୀ, ଗରୁଡ଼ ଦ୍ୱାର ପ୍ରତିହାରୀ, ମହାସୁଆର, ପତ୍ରିବଡୁ, ସୁଆରବଡୁ, ଗରାବଡୁ, ସୁଆର ଓ ମନ୍ଦିରର ଚର୍ଚ୍ଚା କର୍ମଚାରୀମାନଙ୍କ ସହାୟତା ପଡ଼ିଥାଏ । ପୂର୍ବରୁ ଭୋଗମଣ୍ଡପ ଘର ସୁଆରବଡୁ ଧୋ ପଖାଳ (ଧୋଇ) କରିଥାନ୍ତି । ପ୍ରକୃତପକ୍ଷେ ଏହି ଗୃହ ସୁଆର ମହାସୁଆର ନିଯୋଗ ଓ ମନ୍ଦିର ପରିମଳ କର୍ମଚାରୀଙ୍କ ଦ୍ୱାରା ସଫା ହୋଇଥାଏ । ଭୋଗମଣ୍ଡପ ଦୁଆର ପ୍ରତିହାରୀ ଭିତରେ ଶୋଧ କରି ଆସିବା ପରେ ସୁଆରବଡୁ ଅହ୍ଲୋଣିଆ ପାଣି ପକାଇଥାନ୍ତି । ଜଗମୋହନସ୍ଥିତ ଗରୁଡ଼ ପାଖ ଦ୍ୱାର ଓ ଭୋଗମଣ୍ଡପ ଦ୍ୱାରରେ ଦୁଇଜଣ ପ୍ରତିହାରୀ ସେବକ ଜଗି ରହିଥାନ୍ତି । ଏହାକୁ ଶ୍ରୀମନ୍ଦିର ଭାଷାରେ "ଭୋଗ ମଣ୍ଡପ ଉଠିବା" ବୋଲି କୁହାଯାଏ । ସୁଆର ଓ ମହାସୁଆର ସେବକମାନେ ରୋଷ ଘରେ ରନ୍ଧନ ହେଉଥିବା ଭୋଗଦ୍ରବ୍ୟ ଭୋଗମଣ୍ଡପ ଘରକୁ ବୋହିଥାନ୍ତି । ଶ୍ରୀମନ୍ଦିର ସ୍ୱତ୍ୱଲିପି (Record of Rights) ଦ୍ୱିତୀୟ ଭାଗରେ ୨୦୫ ପୃଷ୍ଠାରେ କେତେକ ମଠ, ସେବକ ଓ ବ୍ୟକ୍ତି ବିଶେଷଙ୍କ ନାମରେ ଭୋଗମଣ୍ଡପର ଏକ ପନ୍ତି ତାଲିକା ରହିଛି । ଏଥି ମଧ୍ୟରେ ଚକ୍ରକୋଟ ଜଗନ୍ନାଥ ଖୁଣ୍ଟିଆ, ଭୀମସେନ୍ ମହାପାତ୍ର, ବୈରାଗୀ ମହାସୁଆର, କୃଷ୍ଣଚନ୍ଦ୍ର ମହାସୁଆର, ଓଡ଼ିଆ ମଠ, ରାମଚନ୍ଦ୍ର ଦୀକ୍ଷିତ (ଉପାସୀ ମହାପାତ୍ର ଦାବୀ କରନ୍ତି), ଗୋବିନ୍ଦ ମୁଦୁଲି, ଚିନ୍ତାମଣି ସୁଆର, ହରିବଲ୍ଲଭ ସୁଆର, ସଦା

ପ୍ରତିହାରୀ, ଭୀମ ମହାସୁଆର, ବଳଭଦ୍ର ପଣ୍ଡା, ଆର୍ତ୍ତ ପ୍ରତିହାରୀ, ଗୋପାଳ ଦାସ, ଭିଙ୍ଗାରପୁର ଷ୍ଟେଟ୍, ଏମାର ମଠ, କୃଷ୍ଣଚନ୍ଦ୍ର ମହାପାତ୍ର, ହରି ମହାପାତ୍ର, ବଳଭଦ୍ର ସୁବୁଧି ଓ ଜଗନ୍ନାଥ ସୁବୁଧି, ଜଗନ୍ନାଥ ମହାପାତ୍ର, ରାମଚନ୍ଦ୍ର ମହାପାତ୍ର, ନାରାୟଣ ମହାପାତ୍ର, ବଟକୃଷ୍ଣ ମହାସୁଆର, ଶ୍ରୀଧର କର, ଗଙ୍ଗାଧର ମହାପାତ୍ର, ରାଘବ ଦାସ ମଠ, ଭୀମ ପାଢ଼ି, ସନ୍ୟାସୀ ରଘୁତୀର୍ଥ ମଠ ତରଫରୁ ଭୋଗମଣ୍ଡପ ପନ୍ତିରେ ଭୋଗ ହୋଇଥାଏ । (ସୂଚନାଯୋଗ୍ୟ ଯେ, ବର୍ତ୍ତମାନ ଏହି ତାଲିକାରେ ଉଲ୍ଲେଖ ଥିବା କେତେକ ବ୍ୟକ୍ତି ବିଶେଷଙ୍କ ମୃତ୍ୟୁ ଓ ପନ୍ତି ହସ୍ତାନ୍ତର ଦ୍ୱାରା ଏଥିରେ ଅନେକ ପରିବର୍ତ୍ତନ ଘଟିଅଛି) ।

ଭୋଗମଣ୍ଡପ ପୂଜା ପୂର୍ବରୁ ଚର୍ଚ୍ଚା ଷ୍ଟାଫ୍ ପତ୍ରିବଡୁଙ୍କୁ ଖବର ଦେବା ପରେ ସଂପୃକ୍ତ ସେବକ ଘଣ୍ଟି, ଶଙ୍ଖ, ବଟା, ତୁଳସୀ, ଫୁଲ ଇତ୍ୟାଦି ପୂଜାର ଉପକରଣମାନ ଭୋଗମଣ୍ଡପ ଗୃହର ଗରୁଡ଼ ଦ୍ୱାର ଠାରେ ରଖିଥାନ୍ତି । ଏହି ସମୟରେ ଗରାବଡୁ ସେବକ ଝରି ଓ ସୁଆରବଡୁ ପିଢ଼ା ନେଇ ରଖନ୍ତି । ତତ୍ପରେ ଚର୍ଚ୍ଚା କର୍ମଚାରୀ ପୂଜାପଣ୍ଡାଙ୍କୁ ଡାକି ଗରୁଡ଼ ଦ୍ୱାର ଫିଟାନ୍ତି । ପତ୍ରି ପୂଜା ଠା’ କରିବା ପରେ ତିନି ଜଣ ପୂଜାପଣ୍ଡା ପୂଜାରେ ବସନ୍ତି । ଉଲ୍ଲେଖଯୋଗ୍ୟ ଯେ, ଭୋଗମଣ୍ଡପ ପୂଜା ପଞ୍ଚୋପଚାରରେ ହୋଇଥାଏ । ପୂଜା ବସିଥିବା ସମୟରେ ଭୋଗମଣ୍ଡପ ଗୃହର ଅନ୍ୟସବୁ ଦ୍ୱାର ବନ୍ଦ ହୁଏ । ସୁଆରବଡୁ ସେବକ ଧୂପ ଓ ଦୀପ ଯୋଗାଇଥାନ୍ତି । ଏତଦ୍‌ବ୍ୟତୀତ ଭୋଗମଣ୍ଡପ ପୂଜା ସମୟରେ ଜଗମୋହନରେ ଥିବା ବାହାର ଓ ଭିତର କାଠ ଅର୍ଗଳି ତଳକୁ ଖସାଇ ଦିଆଯାଏ । ଠାକୁରମାନଙ୍କ ସମ୍ମୁଖ ଓ ଭୋଗମଣ୍ଡପ ମଧ୍ୟରେ କିଛି ପ୍ରତିବନ୍ଧକ କିମ୍ବା ସାମନାରେ କେହି ଲୋକ ରହି ନଥାନ୍ତି । ଏହି ସମୟରେ ଭିତରକାଠ ଠାରୁ ଗରୁଡ଼ ସ୍ତମ୍ଭ ସମ୍ମୁଖସ୍ଥ ଭୋଗମଣ୍ଡପ ଦ୍ୱାର ପର୍ଯ୍ୟନ୍ତ ଶ୍ରୀମନ୍ଦିରର ଚର୍ଚ୍ଚା ଓ ଅନ୍ୟାନ୍ୟ ବରକନ୍ଦାଜ (ପୋଲିସ) ମାନେ ଦୁଇ ପାର୍ଶ୍ୱରେ ଠିଆ ହୋଇ ଲୋକମାନଙ୍କୁ ଠାକୁର ତଥା ପୂଜା ଚାଲୁଥିବା ସମ୍ମୁଖକୁ ଛାଡ଼ି ନଥାନ୍ତି । ଦର୍ଶକ ତଥା ଭକ୍ତମାନେ ସମ୍ମୁଖ ଭାଗ ଛାଡ଼ି ଦୁଇ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ରହିଥାନ୍ତି । ଭୋଗ ସରିବା ପରେ ବରକନ୍ଦାଜ (ମନ୍ଦିର ପୋଲିସ) ମାନେ ବାହାର କାଠ ଓ ପଢ଼ିଆରୀ ସେବକ ଭିତର କାଠ ଲଗାଇ ଦିଅନ୍ତି । ପୂଜା ସରିବା ପରେ ଭୋଗମଣ୍ଡପର ଅନ୍ୟ ସବୁ ଦ୍ୱାର ଖୋଲାଯାଏ । ବୋଝିଆମାନେ ଭୋଗମଣ୍ଡପରୁ ଭୋଗ ବେତାମାନଙ୍କରେ ଉଠାଇନେଇ ଆନନ୍ଦ ବଜାର ଓ ଅନ୍ୟାନ୍ୟ ସରଘର ପିଣ୍ଡାମାନଙ୍କରେ ରଖିଥାନ୍ତି ।

ଭୋଗମଣ୍ଡପରେ ସାଧାରଣତଃ ସାଧା ଅନ୍ନ, ଘିଅ ଅନ୍ନ, ଖେଚେଡ଼ି, ମିଷ୍ଟାନ୍ନ, ଅନ୍ନ ରସାବଳି, କାନିକା, ଡାଲି, ଡାଲମା, ବେସର, ମହୁର, ଶାଗ, ଗୋଟି ବାଇଗଣ, ଗୋଟା ସୋଲା, ଗୋଟା ମୁଗ, ଫାଳ ସୋଲା, ଦହି ବାଇଗଣ, ମଧୁରୁଚି, ଛେନା ତରକାରୀ, ପିଠା, ଦହିବରା, ଝିଲି, ଖଜା, ଫେଣି ଇତ୍ୟାଦି ଅନେକ ପ୍ରକାରର ଭୋଗ ହୋଇଥାଏ ।

ସୂଚନାଯୋଗ୍ୟ ଯେ, ପୂର୍ବ ପରମ୍ପରା ପ୍ରକାରେ ବର୍ତ୍ତମାନ ମଧ୍ୟ ଶ୍ରୀମନ୍ଦିର ରୋଷଶାଳାକୁ କେତେକ ପରିବା ସମ୍ପୂର୍ଣ୍ଣ ନିଷିଦ୍ଧ କରା ଯାଇଅଛି । ତନ୍ମଧ୍ୟରେ ବିଲାତି ଆଳୁ, ସଜନା ଛୁଇଁ, ଟମାଟୋ, ପିଆଜ, ରସୁଣ, କଞ୍ଚା ଲଙ୍କା, ଶୁଖିଲା ଲଙ୍କା ଇତ୍ୟାଦି ଅନ୍ତର୍ଭୁକ୍ତ ।

ଭୋଗମଣ୍ଡପ ଧୂପ କେତେକ ନିର୍ଦ୍ଦିଷ୍ଟ ପର୍ବପର୍ବାଣୀ ଦିନମାନଙ୍କରେ ସକାଳ ଧୂପ ପରେ ନହୋଇ ମଧ୍ୟାହ୍ନ ଧୂପ ପରେ ହୋଇଥାଏ । ତନ୍ମଧ୍ୟରେ ଅକ୍ଷୟ ତୃତୀୟା, ମକର ସଂକ୍ରାନ୍ତି ତିଥି ଇତ୍ୟାଦି ଅନ୍ୟତମ । ଏହା ବ୍ୟତୀତ କେତେକ ନିର୍ଦ୍ଦିଷ୍ଟ ପର୍ବପର୍ବାଣୀ ତଥା ଉତ୍ସବାଦିମାନଙ୍କରେ ଚାହିଦା ମୁତାବକ ଦିନକୁ ସ୍ଥଳ ବିଶେଷରେ ଦୁଇ ତିନି ଥର ଭୋଗମଣ୍ଡପ ହୋଇଥାଏ । ଏହାକୁ ପଛ ଭୋଗମଣ୍ଡପ, ୨ୟ ଭୋଗମଣ୍ଡପ ଓ ୩ୟ ଭୋଗମଣ୍ଡପ ବୋଲି କୁହାଯାଇଥାଏ । ବିଶେଷ କରି ନେତ୍ରୋତ୍ସବ, ସନ୍ଧ୍ୟା ଦର୍ଶନ, ସାବିତ୍ରୀ ଅମାବାସ୍ୟା ପୂର୍ବଦିନ, ରାଜପ୍ରସାଦ ବିଜେ, ଖଳି ଲାଗି ଏକାଦଶୀ, ଚକା ବିଜେ, ରୁକ୍ମିଣୀ ହରଣ ଏକାଦଶୀ, କାର୍ତ୍ତିକ ଓ ପୁଷ ମାସ ପ୍ରଭୃତି ଦିନମାନଙ୍କରେ ଆବଶ୍ୟକ ସ୍ଥଳେ ଅଧିକ ଭୋଗମଣ୍ଡପ କରା ଯାଇଥାଏ ।

ଭୋଗମଣ୍ଡପରେ ପୂଜା ହେଉଥିବା ଅନ୍ନ ମହାପ୍ରସାଦକୁ ଆନନ୍ଦ ବଜାରରେ ସର୍ବ ସାଧାରଣଙ୍କ ଉଦ୍ଦେଶ୍ୟରେ ସୂପକାର ସେବକମାନେ ବିକ୍ରୟ କରିଥାନ୍ତି ।



# ମଧ୍ୟାହ୍ନ ଧୂପ

ରତ୍ନସିଂହାସନ ଉପରେ ବିଜେ କରିଥିବା ଶ୍ରୀବିଗ୍ରହମାନଙ୍କର ସମସ୍ତ ଧୂପ ମଧ୍ୟରେ ମଧ୍ୟାହ୍ନ ଧୂପର ବିଶେଷତ୍ୱ ରହିଛି । କାରଣ ଏହି ଧୂପରେ ସବୁଠାରୁ ଅଧିକ ପରିମାଣର ଓ ବିଭିନ୍ନ ପ୍ରକାରର ଭୋଗ ସାମଗ୍ରୀ ପନ୍ତିରେ ବଢ଼ା ଯାଇଥାଏ । ଅନ୍ୟାନ୍ୟ ଧୂପ ଅପେକ୍ଷା ଏହି ଧୂପରେ ଅଧିକ ଅର୍ଥ ଖର୍ଚ୍ଚ ହୋଇଥାଏ ।

ଶ୍ରୀମନ୍ଦିର ସ୍ୱତ୍ୱଲିପି (Record of Rights) ମୁତାବକ ଏହି ନୀତିର ନିର୍ଦ୍ଧାରିତ ସମୟ ହେଉଛି ମଧ୍ୟାହ୍ନ ୧୨.୩୦ମିନିଟରୁ ୧ ଘଣ୍ଟା । ଅପରପକ୍ଷରେ ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକାରେ ମଧ୍ୟାହ୍ନ ଧୂପର ନିରୂପିତ ସମୟ ଦିବା ୨ଟା ୩୦ମିନିଟରୁ ୩ ଘଣ୍ଟା ବୋଲି ଉଲ୍ଲେଖ ରହିଛି । ସକାଳ ଧୂପ ପୂଜା ପରି ଏହି ଧୂପ ଷୋଡ଼ଶ ଉପଚାର ପୂଜାରେ ହୋଇଥାଏ । କେବଳ ପଟୁଆର ହୁଏ ନାହିଁ ଓ ଭୋଗ ସାମଗ୍ରୀ ସକାଳ ଧୂପ ସାମଗ୍ରୀ ଠାରୁ ପୃଥକ୍ ଅଟେ ।

ପ୍ରତ୍ୟହ ଭୋଗମଣ୍ଡପ ପୂଜା ଶେଷ ହେବା ପରେ ଭିତର କାଠ ଲଗା ହେଲେ ପ୍ରତିହାରୀ ଭିତର କାଠ ପାଖରେ ବାହ୍ୟ ଟେରା ବାନ୍ଧେ । ସୁଆରବଡୁ ଅମଣିଆ ପାଣି ପକାଏ । ଏଥି ପୂର୍ବରୁ ପାଣିଆପଟ ସେବକ ସକାଳ ଧୂପରେ ବ୍ୟବହୃତ ଥାଳି ଓ ପରଖ ସବୁ ଧୋଇକରି ସୁଆରବଡୁଙ୍କୁ ଦେଇଥାନ୍ତି । ସୁଆରବଡୁ ସେବକ ପୁନରାୟ ଉପରୋକ୍ତ ଥାଳି ଓ ପରଖକୁ ପାଣିରେ ଭଲ ଭାବରେ ଧୋଇ ଭିତରକୁ ନେଇଥାନ୍ତି । ଏହାପରେ ମୁରୁଜପକା ଓ ଚାରିବାଡ଼ରେ (ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ) ଥାଳି ପରଖ ଆଦି ପକାଯାଏ । ଏହି ପୂଜା ଓ ଭୋଗ ବଢ଼ି ଟେରା ଫିଟିଲେ ସକାଳ ଧୂପ ପରି ଆଳତୀ ହୁଏ । ପୂଜା ସମୟରେ ବଜନ୍ତରୀ ଓ ଘଣ୍ଟୁଆ ସେବକ ଘଣ୍ଟ ବଜାଇଥାନ୍ତି । ପୁରାଣ ପଣ୍ଡା ପୁରାଣ ପାଠ କରିଥାନ୍ତି ।

**ମଧ୍ୟାହ୍ନ ଧୂପର ଭୋଗ ତାଲିକା :**

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ହୋଇଥିବା ବିବରଣ ପ୍ରକାରେ ଦେଉଳକରଣଙ୍କ ପାଖରେ ଥିବା ୧୯୧୦ ମସିହାର ଏକ ପୁରାତନ ଭୋଗ ତାଲିକା ଅନୁଯାୟୀ ମଧ୍ୟାହ୍ନ ଧୂପରେ ପ୍ରାୟ ୩୬ ପ୍ରକାରର ମୋଟ ୪୩୫ଟି ଭୋଗ ସାମଗ୍ରୀ ଠାକୁରମାନଙ୍କୁ ନୈବେଦ୍ୟ ହେଉଥିଲା । ପାଠକ ତଥା ଗବେଷକମାନଙ୍କ ନିମିତ୍ତ ନିମ୍ନରେ ତାହା ପ୍ରଦତ୍ତ କରାଗଲା ।

| ଭୋଗର ନାମ | ପରିମାଣ | ଭୋଗର ନାମ | ପରିମାଣ |
|---|---|---|---|
| ସୁଆର ଆରିଷା | ୨୫ | ଡାଟ ଆରିଷା | ୧୨ |
| ଧଉଳା | ୫ | ଭୋଗ ମନୋହର | ୧୦ |
| ପଶୁପାଳକ ଧଉଳା | ୯ | ବଡ଼ କାକରା | ୪ ସରା (୮) |

| | | | |
|---|---|---|---|
| ସାନ ଆରିଷା | ୨୬ | ସାନ କାକରା | ୧୨ |
| ବଡ଼ ଆରିଷା | ୨୫ | ମରିଚି ଲଡୁ | ୬୩ |
| ସାନ ଧଉଳା | ୧୦ | ବଡ଼ ନାଡ଼ି | ୪ |
| ମାଠ ପୁଳି | ୧୨ | ଘି ନାଡ଼ି | ୨ |
| ବଡ଼ ବଡ଼ା | ୧୬ | ବଡ଼ ପିଠା | ୩ |
| ସାନ ବଡ଼ା | ୧୨ | ସାନ ପିଠା | ୭ |
| ତିପୁରି | ୧୦ | ସର | ୫ |
| ତାଟ ନାଡ଼ି | ୫ | ପଣା | ୧୧ |
| ତାଟ ମନୋହର | ୩୮ | ମୁଗ ମରିଚି | ୫ |
| ବଡ଼ି କ୍ଷୀରିସା (ବଡ଼) | ୩ | ପାଣି | ୪ |
| ବଡ଼ି କ୍ଷୀରିସା (ସାନ) | ୪ | ସୁବାସ ପଖାଳ | ୧୧ |
| ଅମୃତ ଦୁଧ | ୩ | ସାକରା | ୩ |
| ଥାଳି ଅନ୍ନ | ୧୭ | ସାନ ଗଜା | ୭ |
| ଓରିଆ | ୩୩ | ବଡ଼ ଗଜା | ୮ |
| କଡ଼ମ୍ବା | ୩ | ଅଙ୍ଗବାସ ଓଳି | ୫ |

ସେହିପରି ୧୯୫୨ରୁ ୧୯୫୪ ମସିହା ମଧ୍ୟରେ ସଂଗୃହୀତ ହୋଇଥିବା ଅନ୍ୟ ଏକ ଭୋଗ ତାଲିକା ଅନୁଯାୟୀ :

| ଭୋଗର ନାମ | ପରିମାଣ | ଭୋଗର ନାମ | ପରିମାଣ |
|---|---|---|---|
| ମରିଚି ଲଡୁ | ୧୧ ଗଣ୍ଡା | ଗଜା | ୧୦୦ |
| ସାନ ପିଠା | ୨ଟା | ପିଠା | ୪ଟା |
| ୫ ପଟିଆ ନିଯୋଗ ପିଠା | ୧ଟା | ମାଠ ପୁଳି | ୧୨ |
| ବଡ଼ା | ୧ଟା | ବଡ଼ ଆରିଷା | ୨୨ |
| ସାନ ଆରିଷା | ୨୩ | ପୁଷ୍ପାଳକ ଆରିଷା | ୯ |
| ସୁଆର ଆରିଷା | ୧୨ | ତିପୁରି | ୫ |
| ପଖାଳ | ୧୧ | ସାକରା | ୭ |
| ଓରିଆ | ୪ | ସୁଜି କ୍ଷୀରି | ୧ |
| ବୁନ୍ଦିଆ କ୍ଷୀରି | ୧ | ମୁଗ ସିଝା | ୪ |
| କଡ଼ମ୍ବା | ୩ | ମନୋହର | ୨୨ |
| ତାଟ ମନୋହର | ୫ | ଥାଳି ପକା | ୯ |
| | | ପଣା | ୧୪ |

ସମ୍ପ୍ରତି ଶ୍ରୀମନ୍ଦିର କାର୍ଯ୍ୟାଳୟ ଓ ଦେଉଳକରଣଙ୍କ ସୂତ୍ରରୁ ସଂଗ୍ରହ କରାଯାଇ ଜଣାଯାଏ ଯେ, ବର୍ତ୍ତମାନର ଭୋଗ ତାଲିକା ଓ ପରିମାଣ ନିମ୍ନ ପ୍ରକାରର ।

| ଭୋଗର ନାମ | ପରିମାଣ | ଭୋଗର ନାମ | ପରିମାଣ |
|---|---|---|---|
| ବଡ଼ ପିଠା | ୪ ସରା | ସାନ ବଡ଼ା | ୯ଟି |
| ଛେନା ପିଠା | ୨ ସରା | ବଡ଼ କାକରା | ୧ସରା |
| ତିପୁରି | ୫ଟି | ସାନ କାକରା | ୧୨ଟି |
| ବଡ଼ ଆରିଷା | ୧୮ଟି | ମହାବୀର ପିଠା | ୭ ସରା (୧୪ପଟ) |
| ସାନ ଆରିଷା | ୨୧ଟି | ଗୋଟିକିଆ ପଟ | ୩ ପଟ |
| ମାଠ ପୁଳି | ୧୭ଟି | ଫେଣି ବଡ଼ ସରା | ୧ପଟ |
| ବଡ଼ ବଡ଼ା | ୯ଟି | ଝଡ଼େଇ ନେଦା ତାଡ଼ | ୧ |

ଶ୍ରୀବଳଭଦ୍ର (ବଡ଼ ବାଡ଼) ଥାଳି ଅନ୍ନ - ୯ କୁଡ଼ିଆ
ଶ୍ରୀସୁଭଦ୍ରା (ମଝି ବାଡ଼) ଥାଳି ଅନ୍ନ - ୩ କୁଡ଼ିଆ
ଶ୍ରୀସୁଦର୍ଶନ ଥାଳି ଅନ୍ନ - ୨ କୁଡ଼ିଆ
ଶ୍ରୀଜଗନ୍ନାଥ (ମହାପ୍ରଭୁ ବାଡ଼) ଥାଳି ଅନ୍ନ - ୪ କୁଡ଼ିଆ
ଭୋଗ ଓରିଆ ବଡ଼ - ୫ ଗୋଟା

| ଭୋଗର ନାମ | ପରିମାଣ | ଭୋଗର ନାମ | ପରିମାଣ |
|---|---|---|---|
| ବଡ଼ ଓଳି ଓରିଆ | ୧୦ ଓଳି | ବଡ଼ପିଠା | ୪ ସରା |
| ସାନ ଓଳି ଓରିଆ | ୪ ଓଳି | ବଡ଼ ପାଗ ଆରିଷା | ୬ଟି |
| ପିତ ଅନ୍ନ | ୪ ଓଳି | ପାଗ ଆରିଷା | ୯ଟି |
| ମୁଗ ଡାଲି | ୪ ଓଳି | ବଡ଼ ବଡ଼ି ଖିରିଷା | ୧ ଓଳି |
| ବଡ଼ ଓଳି ମରିଚି ପାଣି | ୪ ଓଳି | ସୁଜି ବଡ଼ି ଖିରି | ୧ ଓଳି |
| ସାନ ଓଳି ମରିଚି ପାଣି | ୫ ଓଳି | ସାନ ଓଳି ବଡ଼ି ଖିରିଷା | ୪ ଓଳି |
| ଝଡ଼େଇ ନେଦା ଗୁଳା | ୧୦ଟି | ଟାକୁଆ | ୪ ସରା |
| ଝଡ଼େଇ ମନୋହର | ୮ଟି | ଗଜା | ୧ ଓଳି (୨୪ଟି) |
| ସୁଆର ମନୋହର | ୩୦ଟି | ବିରି ବଡ଼ି | ୪ ଓଳି |
| ଥାଳି ପକା ଧଉଳା | ୯ଟି | କଡ଼ମ୍ବା ହାଣ୍ଡି | ୩ ଗୋଟା |
| ବଡ଼ ଖଇର ଚୂଳ | ୧ଟି | ସାନ କଡ଼ମ୍ବା | ୫ ଓଳି |
| ସାନ ଖଇର ଚୂଳ | ୪ଟି | ପଣା | ୫ ଓଳି |
| ବଡ଼ ପୁଷ୍ପାଳକ ଆରିଷା | ୧୦ଟି | ସାକରା | ୨ ଓଳି |
| ମରିଚି ନଡ଼ୁ | ୫୦ଟି | ସୁବାସ ପଖାଳ | ୧୧ ଓଳି |

ମଧ୍ୟାହ୍ନ ଧୂପ ପରେ ଦକ୍ଷିଣି ଘରେ ବିରାଜିତ ବିଜେ ପ୍ରତିମା ଓ ମହାଲକ୍ଷ୍ମୀ ଦେବୀଙ୍କର ବାହାର ଦେଉଳି ଭୋଗ ହୋଇଥାଏ । ଏଠାରେ ସୂଚନାଯୋଗ୍ୟ ଯେ, ନିରୂପିତ ସମୟରେ ଠାକୁରମାନଙ୍କର ମଧ୍ୟାହ୍ନ ଧୂପ ଶେଷ ହୋଇପାରେ ନାହିଁ । ସାଧାରଣତଃ ଗୋଟିଏ ବର୍ଷର ଏହି ନୀତିର ସମୟକୁ ଅନୁଧ୍ୟାନ କଲେ ଜଣାଯାଏ, ପ୍ରତ୍ୟହ ଅପରାହ୍ନ ୫ଟା ୩୦ ମିନିଟ୍‌ରୁ ସନ୍ଧ୍ୟା ୭ଟା ମଧ୍ୟରେ ମଧ୍ୟାହ୍ନ ଧୂପ ପୂଜା ହୋଇଥାଏ । ସକାଳ ଧୂପରେ ଯେଉଁ ସେବକମାନେ ସଂପୃକ୍ତ ଥାଆନ୍ତି, ସେହିମାନେ ହିଁ ମଧ୍ୟାହ୍ନ ଧୂପ ନୀତିରେ ଅଂଶ ଗ୍ରହଣ କରିଥାଆନ୍ତି । ଉଲ୍ଲେଖଯୋଗ୍ୟ ଯେ, ପ୍ରତି ଧୂପ ଶେଷରେ ଦର୍ଶନାର୍ଥୀମାନେ ସ୍ୱଳ୍ପ ସମୟ ପାଇଁ ପୋଖରିଆକୁ ଯିବା ପାଇଁ ପରିମାଣିକ ଟିକେଟ୍ ସଂଗ୍ରହ କରିଥାନ୍ତି ।

ମଧ୍ୟାହ୍ନ ଧୂପରେ ଭୋଗ ହେଉଥିବା ସମସ୍ତ ମହାପ୍ରସାଦକୁ ନୀତି ସଂପୃକ୍ତ ସେବକ, ଗଜପତି ମହାରାଜା, ମଠାନୁଷ୍ଠାନ, ବାହାର ଦେଉଳ ଓ ବ୍ୟକ୍ତି ବିଶେଷଙ୍କୁ ପ୍ରାପ୍ୟ ଖେଇ ଭାବରେ ବଣ୍ଟନ କରା ଯାଇଥାଏ । ଏତଦ୍‌ବ୍ୟତୀତ ତନ୍ମଧ୍ୟରୁ କେତେକ ମହାପ୍ରସାଦର କେହି ଦାବୀଦାର ନଥିବାରୁ ତାହା ପ୍ରଶାସନ ତରଫରୁ କୋରଖ ହୋଇ ବିକ୍ରୟ କରାଯାଇ ତଦ୍‌ଲବ୍‌ଧ ଅର୍ଥ ଶ୍ରୀମନ୍ଦିର ପାଣ୍ଠିରେ ଦାଖଲ ହୋଇଥାଏ ।



# ମଇଲମ ଓ ବେଶ

## (ମଧ୍ୟାହ୍ନ ଧୂପ ପର ମଇଲମ ଓ ବେଶ)

ଉପରୋକ୍ତ ନୀତିର ନିରୂପିତ ସମୟ ଅପରାହ୍ନ ୩ଟା ୩୦ ମିନିଟ୍ରୁ ୪ଟା ମଧ୍ୟରେ । ପ୍ରତ୍ୟହ ମଧ୍ୟାହ୍ନ ଧୂପ ଶେଷ ହେବା ପରେ ଗମ୍ଭୀରା ବା ପୋଖରିଆରୁ ସମସ୍ତ ପ୍ରସାଦ ମହାସୁଆର, ସୁଆର ଓ ବୋଝିଆମାନଙ୍କ ଦ୍ୱାରା ବାହାରକୁ ଅଣା ଯାଇଥାଏ । ଏହାପରେ ସୁଆରବଡୁ ସେବକ ପୋଖରିଆ ଠାରୁ ଭିତର କାଠ ପର୍ଯ୍ୟନ୍ତ ଗରାରେ ପାଣି ପକାଇ ଉକ୍ତ ସ୍ଥାନକୁ ଧୋଇ ଖଡ଼ିକା ମୁଠାରେ ସଫା କରିଥାନ୍ତି । ଉପରି ବର୍ଣ୍ଣିତ ସ୍ଥାନ ସମ୍ପୂର୍ଣ୍ଣ ରୂପେ ପରିଷ୍କାର ହୁଏ । ଶ୍ରୀମନ୍ଦିରର ପ୍ରଚଳିତ ଭାଷାରେ ଏହାକୁ ''ପ୍ରସାଦ ବାହାରି ପାଣି ପଡ଼ିବା'' କୁହାଯାଏ । ଏହାପରେ ପାଳିଆ ଖୁଣ୍ଟିଆ ପୁଷ୍ପାଳକମାନେ ରତ୍ନସିଂହାସନ ଉପରକୁ ଉଠି ଠାକୁରମାନଙ୍କର ଲାଗି ତୁଳସୀ, ପୁଷ୍ପହାର ଓ ବସ୍ତ୍ର ମଇଲମ (ଓଲାଗି) କରିଥାନ୍ତି । ଏହି ସମୟରେ ଚାଙ୍ଗଡ଼ା ମେକାପ ଶାଢ଼ି, ଖଣ୍ଡୁଆ, ଫୁଟା, ପହରଣ ଓ ଶିରକାପଡ଼ା ବସ୍ତ୍ର ପୁଷ୍ପାଳକ ସେବକଙ୍କୁ ବଢ଼ାଇଥାନ୍ତି । ଏତଦ୍‌ବ୍ୟତୀତ ଖୁଣ୍ଟିଆ ସେବକ ମାଳ, ଫୁଲ, ତୁଳସୀ ପୁଷ୍ପାଳକଙ୍କୁ ବେଶ ନିମିତ୍ତ ବଢ଼ାଇଥାନ୍ତି ।

ତିନି ପାଳିଆ ପୁଷ୍ପାଳକ ଶ୍ରୀବିଗ୍ରହମାନଙ୍କୁ ବସ୍ତ୍ର, ମାଳଫୁଲ ଓ କର୍ପୂର ଇତ୍ୟାଦି ଲାଗି କରାଇ ବେଶ କରିବା ପରେ ସିଂହାସନରେ ମୁଣ୍ଡିଆ ମାରି ତଳକୁ ଓହ୍ଲାଇ ଆସିଥାନ୍ତି ।



# ମଧ୍ୟାହ୍ନ (ଦିବା) ପହୁଡ଼

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ମଧ୍ୟାହ୍ନ ପହୁଡ଼ ଦିବା ୧ ଘଣ୍ଟାରୁ ୧ ଘଣ୍ଟା ୩୦ ମିନିଟ୍ ମଧ୍ୟରେ କରାଯିବାର ନିୟମ ଉଲ୍ଲେଖ ଥିଲେ ହେଁ ପରବର୍ତ୍ତୀ ସମୟରେ "ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ନୀତି ବିବରଣ ପଞ୍ଜିକା" ଫର୍ମରେ ଏହି ପହୁଡ଼ର ନିରୂପିତ ସମୟ ଅପରାହ୍ନ ୪ଟା ୩୦ ମିନିଟ୍ ବୋଲି ମୁଦ୍ରିତ ହୋଇଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ସାଧାରଣ ଦିବସମାନଙ୍କରେ ସ୍ୱତ୍ୱଲିପି କିମ୍ବା ମନ୍ଦିର ପଞ୍ଜିକାରେ ଉଲ୍ଲେଖ ଥିବା ନିରୂପିତ ସମୟ ଅନୁଯାୟୀ ନୀତି ସଂପାଦନ ହୋଇପାରୁ ନଥିବାରୁ ପ୍ରାୟତଃ ଦିବା ପହୁଡ଼ ହୋଇ ନଥାଏ । କେବଳ କାର୍ତ୍ତିକ ମାସ ଓ ପୌଷ ମାସରେ ସ୍ୱତନ୍ତ୍ର ନୀତି ନିର୍ଘଣ୍ଟ ଅନୁଯାୟୀ ରାତ୍ର ୩ଟାରେ ଦ୍ୱାରଫିଟା ହେଉଥିବାରୁ ଏହି ଦିନମାନଙ୍କରେ କେତେକ ଦିନ ଦିବା ପହୁଡ଼ ନୀତି କରାଯାଇ ପାରିଥାଏ । ଏପରିକି ଉପରୋକ୍ତ ମାସରେ ସମସ୍ତ ଦିନ ମଧ୍ୟାହ୍ନ ପହୁଡ଼ ହୋଇ ନପାରି ମାତ୍ର ପାଞ୍ଚ ଦିନରୁ ଦଶ ଦିନ ପର୍ଯ୍ୟନ୍ତ ଠାକୁରମାନଙ୍କ ଦିବା ପହୁଡ଼ ନୀତି ସମ୍ଭବ ହୋଇଥାଏ । ବର୍ତ୍ତମାନର ସାମାଜିକ ଚଳଣୀ, ଦିନକୁ ଦିନ ଦର୍ଶନାର୍ଥୀଙ୍କ ସଂଖ୍ୟା ବୃଦ୍ଧି, ବହୁଳ ଓ ଜଟିଳ ନୀତି ତଥା ଅତ୍ୟଧିକ ସେବା ପୂଜାରେ ସଂଶ୍ଳିଷ୍ଟ ସେବକ ବୃନ୍ଦ ସମୟାନୁସାରେ ନ ପହଞ୍ଚି ପାରିବା, ଭୋଗର ପରିମାଣ ଅତି ମାତ୍ରାରେ ବୃଦ୍ଧି ପାଇଥିବା ଯୋଗୁଁ ଠାକୁରମାନଙ୍କର ଦିବା ପହୁଡ଼ ନୀତି ସମ୍ଭବପର ହୋଇପାରୁ ନାହିଁ ।

ଶ୍ରୀମହାପ୍ରଭୁମାନଙ୍କର ମଧ୍ୟାହ୍ନ ଧୂପ ଶେଷ ହେବା ପରେ ମଇଲମ ଓ ବେଶ କରାଯାଏ । ଏହାପରେ ମଧ୍ୟାହ୍ନ (ଦିବା) ପହୁଡ଼ ପାଇଁ ଆୟୋଜନ ହୋଇଥାଏ । ପାଳିଆ ଖୁଣ୍ଟିଆ ସିଂହାସନ ତଳେ ଥାଇ ଖଟଶେଯ ମେକାପକୁ ପଲଙ୍କ ବିଜେ କରିବା ନିମନ୍ତେ ଡାକିଥାନ୍ତି । ଖଟଶେଯ ମେକାପ ତିନିଗୋଟି ପଲଙ୍କ ଆଣି ରତ୍ନସିଂହାସନ ସମୀପରେ ପକାଇଥାନ୍ତି । ଏହି ସମୟରେ ପୁଷ୍ପାଳକ ସେବକମାନେ ରତ୍ନସିଂହାସନରୁ ତଳକୁ ଓହ୍ଲାଇ ତିନି ବାଡ଼ରେ ଠାକୁରମାନଙ୍କର ପହୁଡ଼ ଆଳତି କରନ୍ତି । ସୂଚନାଯୋଗ୍ୟ ଯେ, ଏଥିରେ ଉଭୟ କର୍ପୂର ଓ ପିଠଉ ଆଳତି ହୋଇଥାଏ । ଆଳତି ଶେଷ ହେବା ପରେ ଜୟ ବିଜୟ ଦ୍ୱାର ବନ୍ଦ ହୁଏ ଓ ଅଖଣ୍ଡ ମେକାପ ସେବକ ବଇଠାମାନ ଓହ୍ଲାଏ । ହଡ଼ପ ନାଏକ ସେବକ ତିନି ବାଡ଼ରେ ପଲଙ୍କ ତଳେ ବିଡ଼ିଆ (ପାନ) ଲଗାନ୍ତି (ଥୋଇଥାନ୍ତି) । ଗରାବଡୁ ସେବକ ତିନି ବାଡ଼ରେ ପ୍ରସ୍ତୁତ କରିଥିବା ଘସା ଜଳ ଲଗାନ୍ତି । ବଡ଼ ଦ୍ୱାର ପ୍ରତିହାରୀ (ସ୍ୱତ୍ୱଲିପିରେ ବର୍ଣ୍ଣିତ ପ୍ରକାରେ ମଣିମା, ମଣିମା, ରତ୍ନସିଂହାସନ ଛାଡ଼ି ରତ୍ନ ପଲଙ୍କରେ ବିଜେ ହୁଅନ୍ତୁ) ଇତ୍ୟାଦି ମଣିମା ଡାକ ଦେଇ କଳାହାଟ ଦ୍ୱାର ବନ୍ଦ କରିଥାନ୍ତି । ଏହାପରେ କଳାହାଟ ଦ୍ୱାରରେ ମୁଦୁଲି ତାଲା ପକାଇଥାନ୍ତି ଓ ତପ୍ରେ ଭିତର ଦକ୍ଷିଣ ଦ୍ୱାର ଓ ଜୟ ବିଜୟ ଦ୍ୱାର ବନ୍ଦ ହୁଏ ।

ଏହିପରି ଉପରୋକ୍ତ ଦିବା ପହୁଡ଼ ନୀତିରେ ପାଳିଆ ଖୁଣ୍ଟିଆ, ପୁଷ୍ପାଳକ, ଗରାବଡୁ, ଖଟଶେଯ ମେକାପ, ପାଳିଆ ପ୍ରତିହାରୀ, ବଡ଼ ଦ୍ୱାର ପ୍ରତିହାରୀ, ମୁଦୁଲି ସେବକ ପ୍ରଭୃତି ଅଂଶଗ୍ରହଣ କରି ନିଜ ନିଜର ସେବା କାର୍ଯ୍ୟ ନିର୍ବାହ କରିଥାନ୍ତି ।



# ଦ୍ୱାରଫିଟା

## (ପହୁଡ଼ ଫିଟିବା)

ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁଯାୟୀ ମଧ୍ୟାହ୍ନ ପହୁଡ଼ର ଦ୍ୱାର ଫିଟା ସମୟ ସନ୍ଧ୍ୟା ୬ ଘଣ୍ଟା । ଅପର ପକ୍ଷରେ ଶ୍ରୀମନ୍ଦିର ଦୈନିକ ପଞ୍ଜିକାରେ ଏହି ଦ୍ୱାର ଫିଟା ନୀତି ସମୟ ସନ୍ଧ୍ୟା ୬ଟା ୩୦ ମିନିଟ୍ ବୋଲି ଉଲ୍ଲେଖ ଅଛି ।

ଦ୍ୱାର ଫିଟା ନୀତି ସମୟରେ ଭିତରଛ ମହାପାତ୍ର, ପାଳିଆ ମେକାପ, ଅଖଣ୍ଡ ମେକାପ, ପାଳିଆ ପ୍ରତିହାରୀ ଓ ମୁଦୁଲି ସେବକ ମନ୍ଦିର ଭିତରକୁ ଯାଇଥାନ୍ତି । ଭିତରଛ ମହାପାତ୍ରଙ୍କର ହୁକୁମରେ ମୁଦୁଲି କଳାହାଟ ଦ୍ୱାରର ତାଲା ଖୋଲେ । ଏହି ସମୟରେ ପ୍ରତିହାରୀ ସେବକ ମଣିମା ଡାକ ଦିଏ, ଯଥା ''ମଣିମା, ମଣିମା, ରତ୍ନ ପଲଙ୍କ ତେଜି ରତ୍ନସିଂହାସନରେ ବିଜେ କରନ୍ତୁ ।'' ଏହାପରେ ଅଖଣ୍ଡ ମେକାପ ବଇଠା ବସାଏ । ଖଟଶେଯ ମେକାପ ଗମ୍ଭୀରା ଭିତରକୁ ଯାଇ ପଲଙ୍କ ବାହାରକୁ ଆଣିବା ପରେ ଅନ୍ୟାନ୍ୟ ଦ୍ୱାର ସବୁ ସମ୍ପୂର୍ଣ୍ଣଭାବେ ଖୋଲାଯାଏ । ତତ୍ପରେ ଠାକୁରଙ୍କ ପରବର୍ତ୍ତୀ ନୀତି ଆରମ୍ଭ ହୋଇଥାଏ ।

ସାଧାରଣତଃ ଦିବା ପହୁଡ଼ ହେଉ ନଥିବାରୁ ସ୍ୱତନ୍ତ୍ର ଦିନ ବ୍ୟତୀତ ଅନ୍ୟ ଦିବସମାନଙ୍କରେ ଆଉ ଦ୍ୱାର ଫିଟା ନୀତି କରାଯିବା ସମ୍ଭବପର ହୋଇପାରୁ ନାହିଁ ।

ଅପର ପକ୍ଷରେ କାର୍ତ୍ତିକ ମାସର ସ୍ୱତନ୍ତ୍ର ନୀତି ନିର୍ଘଣ୍ଟରେ ନୀତି ସମାପନ ସମୟକୁ ଦେଖି ଦିବା ପହୁଡ଼ ଅଳ୍ପ କେତେ ଦିନ ପାଇଁ କରାଯାଇ ଥାଏ ।



# ସନ୍ଧ୍ୟା ଆଳତି

ନିୟମାନୁଯାୟୀ ଶ୍ରୀବିଗ୍ରହମାନଙ୍କର ପହୁଡ଼ ଫିଟିବା ପରେ ପଲଙ୍କ ଯଥା ସ୍ଥାନରେ ରଖାଯାଇ ଅନ୍ୟାନ୍ୟ ଦ୍ୱାର ଯଥା, ଜୟ ବିଜୟ ଓ ଦକ୍ଷିଣ ଦ୍ୱାର ଇତ୍ୟାଦି ଫିଟାଯାଏ । ଏହାପରେ ରତ୍ନସିଂହାସନାଧିଷ୍ଠିତ ଠାକୁରମାନଙ୍କ ପବିତ୍ର ସନ୍ଧ୍ୟା ଆଳତି ନୀତି ଅନୁଷ୍ଠିତ ହୋଇଥାଏ । ଏହି ନୀତି ପାଇଁ ପାଳିଆ ପୁଷ୍ପାଳକ, ତଳିଛ, ପାଳିଆ ମେକାପ, ଗରାବଡୁ, ସୁଆରବଡୁ ପ୍ରଭୃତି ସେବକଙ୍କ ଆବଶ୍ୟକତା ପଡ଼ିଥାଏ । ତଳିଛଙ୍କ ଅନୁପସ୍ଥିତିରେ ଅନ୍ୟ ଜଣେ ପାଳିଆ ପୁଷ୍ପାଳକ ତାଙ୍କ କାର୍ଯ୍ୟ କରିଥାନ୍ତି । ଶ୍ରୀମନ୍ଦିର ପଞ୍ଜିକାରେ ଉଲ୍ଲେଖ ହୋଇଥିବା ଏହି ନୀତିର ନିରୂପିତ ସମୟ ହେଉଛି ସନ୍ଧ୍ୟା ୭ ଘଣ୍ଟା । ସନ୍ଧ୍ୟା ଆଳତି ପାଇଁ ଆୟୋଜନ କରାଗଲେ ଚର୍ଚ୍ଚା କର୍ମଚାରୀମାନେ ନୀତି ସମ୍ପୃକ୍ତ ସେବକଙ୍କୁ ଡାକିଥାନ୍ତି । ପ୍ରଥମେ ସୁଆରବଡୁ ୨୧ ବତୀ ସଞ୍ଜକାଳି ବଳିତା ସିଂହାସନ ଠାରେ ରଖନ୍ତି । ପାଳିଆ ପୁଷ୍ପାଳକ ଓ ତଳିଛ ମହାପାତ୍ର ଓ ଗରାବଡୁ ଭିତରକୁ ଯାଇ ସିଂହାସନ ତଳେ ଠିଆ ହୋଇଥାନ୍ତି । ଗରାବଡୁ ଠାରୁ ହାତୁଆଣି (ପାଣିରେ ହାତ ଧୋଇବା) ନେଇ ପାଳିଆ ପୁଷ୍ପାଳକ ୨ ଜଣ (ବଳଭଦ୍ର ଓ ସୁଭଦ୍ରାଙ୍କ ବାଡ଼) ଓ ତଳିଛ ମହାପାତ୍ର ଶ୍ରୀଜଗନ୍ନାଥଙ୍କ ବାଡ଼ରେ ତଳେ ଥାଇ କର୍ପୂର ଆଳତି, ୨୧ ବତୀ ସଞ୍ଜକାଳି ଆଳତି କରନ୍ତି । ତଳିଛ ମହାପାତ୍ରଙ୍କ ଅନୁପସ୍ଥିତିରେ ଅନ୍ୟ ଜଣେ ପାଳିଆ ପୁଷ୍ପାଳକ ମହାପ୍ରଭୁଙ୍କ ବାଡ଼ରେ ସନ୍ଧ୍ୟା ଆଳତି କରିଥାନ୍ତି ।

ସନ୍ଧ୍ୟା ଆଳତି ସମୟରେ ଦର୍ଶନାର୍ଥୀ ତଥା ଭକ୍ତମାନେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ବେହେରଣ ଦ୍ୱାର ସାମନାରେ ଥିବା ମାଜଣା ମଣ୍ଡପ ସମ୍ମୁଖରେ ବିକ୍ରୟ କରା ଯାଉଥିବା ପରିମାଣିକ ଟିକେଟ୍ କିଣି ଗମ୍ଭୀରା ତଥା ପୋଖରିଆକୁ ଯାଇଥାନ୍ତି । ସମ୍ପ୍ରତି ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଧାର୍ଯ୍ୟ କରା ଯାଇଥିବା ଏହି ପରିମାଣିକ ଟିକେଟ୍‌ର ମୂଲ୍ୟ ୨୫ ଟଙ୍କା ରଖା ଯାଇଅଛି । ଏଠାରେ ସୂଚନାଯୋଗ୍ୟ ଯେ, ବିକ୍ରୟ ଲବ୍ଧ ପରିମାଣିକ ଟିକେଟ୍ ମୂଲ୍ୟରୁ କେତେକ ଅଂଶ ନିର୍ଦ୍ଦିଷ୍ଟ ସେବକମାନଙ୍କର ପ୍ରାପ୍ୟ ରହିଛି । ପରିମାଣିକ ଟିକେଟ୍ କିଣି ନଥିବା ଜନସାଧାରଣ ତଥା ଦର୍ଶନାର୍ଥୀମାନେ ମଙ୍ଗଳମୟ ଶ୍ରୀବିଗ୍ରହମାନଙ୍କର ଏହି ପବିତ୍ର ଆଳତି ଦର୍ଶନ କରିବା ପାଇଁ ବାହାର କାଠ ଠାରୁ ଗରୁଡ଼ ସ୍ତମ୍ଭ ପର୍ଯ୍ୟନ୍ତ ଦଣ୍ଡାୟମାନ ହୋଇ ଭକ୍ତିପୂତ ଭାବେ ଆନନ୍ଦରେ ହୁଳହୁଳି, ହରିବୋଲି ପକାଇ ପ୍ରଭୁକୃପା ଲାଭ କରିଥାନ୍ତି ।

ମୁଖ୍ୟତଃ ସକାଳର ମଙ୍ଗଳ ଆଳତି ନୀତି ପରି ସନ୍ଧ୍ୟା ଆଳତି ହୋଇଥାଏ । ଉଲ୍ଲେଖଯୋଗ୍ୟ ଯେ, ଯଦି କୌଣସି ଦିନ ସମୟ ଅଭାବରୁ ଠାକୁରମାନଙ୍କର ଦିବା ପହୁଡ଼ ହୋଇ ନପାରେ, ତାହାହେଲେ ଦ୍ୱିପ୍ରହର ଧୂପ ପରେ ଠାକୁରଙ୍କ ମଇଲମ ଓ ବେଶ କରାଯାଇ ତପୂରେ ସନ୍ଧ୍ୟା ଆଳତି ହୁଏ । କିନ୍ତୁ ପହୁଡ଼ ହୋଇଥିଲେ ସନ୍ଧ୍ୟା ଆଳତି ପରେ ବେଶ ହୁଏ । ଏତଦ୍‌ବ୍ୟତୀତ ଏକାଦଶୀ ପଡ଼ିଲେ ଆଗେ ଆଳତି ହୋଇ ପରେ ମଇଲମ ଓ ବେଶ ହୋଇଥାଏ ।

# ସନ୍ଧ୍ୟା ଧୂପ

ଶ୍ରୀମହାପ୍ରଭୁମାନଙ୍କର ସନ୍ଧ୍ୟା ଆଳତି ପରେ ମଇଲମ ଓ ବେଶ ଇତ୍ୟାଦି ହୋଇ ସନ୍ଧ୍ୟା ଧୂପ ଅନୁଷ୍ଠିତ ହୋଇଥାଏ । ସ୍ୱତ୍ୱଲିପି ଉଲ୍ଲେଖ ପ୍ରକାରେ ଏହି ଧୂପ ରାତ୍ର ୭ ଘଣ୍ଟାରୁ ୮ ଘଣ୍ଟା ମଧ୍ୟରେ କରାଯିବାର ନିୟମ ରହିଛି । ସେହିପରି ଶ୍ରୀମନ୍ଦିର ଦୈନିକ ନୀତି ବିବରଣ ପଞ୍ଜିକାରେ ସନ୍ଧ୍ୟା ଧୂପର ନିରୂପିତ ସମୟ ରାତ୍ର ୮ ଘଣ୍ଟାରୁ ୯ ଘଣ୍ଟା ବୋଲି ମୁଦ୍ରିତ ହୋଇଛି ।

ସାଧାରଣତଃ ପରମ୍ପରା ଅନୁଯାୟୀ ମଧ୍ୟାହ୍ନ ଧୂପରେ ଯେଉଁ ନୀତି ଅନୁସୃତ ହୁଏ, ଠିକ୍ ସେହିପରି ସନ୍ଧ୍ୟା ଧୂପ ଅନୁଷ୍ଠିତ ହୋଇଥାଏ । କେବଳ ଧୂପର ଭୋଗର ସାମଗ୍ରୀ ପୃଥକ ଓ ବିଭିନ୍ନ ପରିମାଣର ହୋଇଥାଏ । ସକାଳ ଧୂପ ଓ ଦ୍ୱିପ୍ରହର ଧୂପ ପରି ସମସ୍ତ ପୂଜା ଉପଚାର ନୀତି ଓ ସଂପୃକ୍ତ ସେବକମାନେ ମଧ୍ୟ ଏହି ଧୂପରେ ଉପସ୍ଥିତ ଥାଇ ନିଜ ନିଜର ସେବା ସଂପାଦନ କରିଥାନ୍ତି । ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଉକ୍ତ ଭୋଗ ନିମନ୍ତେ ଆବଶ୍ୟକୀୟ କଞ୍ଚାମାଲ ଓ ଦ୍ରବ୍ୟାଦି କୋଠ ଭୋଗ ଗୋଦାମରୁ ଯୋଗାଇ ଦିଆ ଯାଇଥାଏ ।

ଶ୍ରୀ ଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି (Record of Rights) ଦ୍ୱିତୀୟ ଭାଗର ୨୫ ପୃଷ୍ଠାରେ ଉଲ୍ଲେଖ ହୋଇଥିବା ତଥ୍ୟ ଅନୁଯାୟୀ ୧୯୧୦ ମସିହାରେ ସନ୍ଧ୍ୟା ଧୂପରେ ୧୪ ପ୍ରକାରର ବିଭିନ୍ନ ପରିମାଣର ଭୋଗ ସାମଗ୍ରୀ ରହିଥିଲା । ଏହି ପୁରାତନ ତାଲିକା ନିମ୍ନରେ ପ୍ରଦତ୍ତ କରାଗଲା ।

| | ଭୋଗର ନାମ | ପରିମାଣ |
|---|---|---|
| (୧) | ଝଡ଼େଇ ନେବା | ୨୬ |
| (୨) | ସୁଆର ମନୋହର | ୨୪ |
| (୩) | ଅଧା ଝଡ଼େଇ ନେଦା | (୧୧ ସେର) |
| (୪) | ପାରିଜାତକ | ପ୍୰୦ ଗଣ୍ଡା |
| (୫) | ମାଣ୍ଡୁଅ | ୫ |
| (୬) | ଝଡ଼େଇ ନେଦା କଦଳୀ ପିଠା | ୫ |
| (୭) | ଜେନାମଣି ପିଠା | ୩ |
| (୮) | ହଂସ ବଲ୍ଲଭ ପିଠା | ୧ |
| (୯) | ମହାବୀର ପିଠା | ୨ |
| (୧୦) | ଥାଳି ପକା | ୧୦ |
| (୧୧) | ମାଠ ପୁଳି | ୩୫ |
| (୧୨) | ଫେଣି (ବଡ଼) | ୧ |
| (୧୩) | କଅଁଳ ପୁଳି | ୮ |
| (୧୪) | ସୁଆରି | ୫ ବଡ଼ା |

ସେହିପରି ୧୯୫୨ ମସିହାରୁ ୧୯୫୪ ମସିହା ମଧ୍ୟରେ ଶ୍ରୀମନ୍ଦିର ସ୍ୱତ୍ୱଲିପି ପ୍ରସ୍ତୁତ ସମୟରେ ଶ୍ରୀମନ୍ଦିରରେ ସେହି ସମୟରେ ତତ୍‌କାଳୀନ ସନ୍ଧ୍ୟା ଧୂପରେ ଭୋଗ ହେଉଥିବା ବିଭିନ୍ନ ଭୋଗ ସାମଗ୍ରୀ ମଧ୍ୟରେ :

| ଭୋଗର ନାମ | ପରିମାଣ |
|---|---|
| କଅଁଳ ପୁଳି | ୩ |
| ଟାକୁଆ | ୪ |
| ମାଠ ପୁଳି | ୨୨ |
| ଭୋଗ ପିଠା | ୬ |
| ଗୋଟାଳି | ୧୨ |
| ବଡ଼ କାକରା | ୧ ସରା |
| ସାନ କାକରା | ୧୨ |
| ଲୁଣ ଖୁରୁମା | ୯/ Γ ଗଣ୍ଡା |
| ଅମାଲୁ (ସାନ) | ୧୦୦ |
| ଅମାଲୁ (ବଡ଼) | ୨୨ |
| ସୁଆର ପିଠା | ୧ |
| ରୋଷ ପାଇକ ବିରି ବୁହା | ୨ |
| ଝଡ଼େଇ ନେଦା | ୧ ତାଡ଼ |
| ସୁବାସ ପଖାଳ | ୨୨ |
| କଡ଼ମ୍ବା | ୩ |
| ସାନ କଡ଼ମ୍ବା | ୬ |

ବର୍ତ୍ତମାନର ଭୋଗ ତାଲିକା ପ୍ରକାରେ ତଥା ଦେଉଳକରଣଙ୍କ ସୂତ୍ରରୁ ସଂଗ୍ରହ କରା ଯାଇଥିବା ବିବରଣରୁ ଜଣାଯାଏ ଯେ, ଗତ ପ୍ରାୟ ୪୫ ବର୍ଷ ଧରି ସନ୍ଧ୍ୟା ଧୂପରେ ନିମ୍ନପ୍ରକାରର ଭୋଗ ସାମଗ୍ରୀ ପନ୍ତିରେ ଲାଗୁଅଛି ।

| | ଭୋଗର ନାମ | ପରିମାଣ |
|---|---|---|
| (୧) | ଚୁପୁଡ଼ା ପଖାଳ (ଥାଳି ସୁଆର ଠାରୁ) | ୧୪ ଓଳି |
| (୨) | ପାଣି ପଖାଳ | ୨୩ ଓଳି |
| (୩) | ଚୁପୁଡ଼ା ପଖାଳ (ତୁଣ ସୁଆର ଠାରୁ) | ୫ ଓଳି |
| (୪) | ସାନ ଓଳି ପଖାଳ | ୨ ଓଳି |
| (୫) | ସାକରା | ୫ ଓଳି |

| | | |
|---|---|---|
| (୬) | ବଡ଼ ଅମାଲୁ | ୨୧ଟି |
| (୭) | ହାତ ପୋଡ଼ା ଅମାଲୁ | ୭ଟି |
| (୮) | କଅଁଳ ପୁଳି | ୩ଟି |
| (୯) | ମାଠ ପୁଳି | ୨୨ଟି |
| (୧୦) | ସାନ ଅମାଲୁ | ୮୩ଟି |

ସକାଳ ଧୂପ ଓ ମଧ୍ୟାହ୍ନ ଧୂପ ପରି ସନ୍ଧ୍ୟା ଧୂପ ମଧ୍ୟ ଷୋଡ଼ଶ ଉପଚାରରେ ପୂଜା ହୋଇଥାଏ । ସନ୍ଧ୍ୟା ଧୂପ ଭୋଗ ଶେଷ ପରେ ଠାକୁରମାନଙ୍କୁ ବିଡ଼ିଆ ମଣୋହି କରାଯାଏ । ତତ୍ପରେ କର୍ପୂର ଆଳତି, ଏକୋଇଶି ବତୀ ଆଳତି ଓ ପିଠଉ ଆଳତି ହୁଏ । ଏତଦ୍‌ବ୍ୟତୀତ ଏହି ସମୟରେ ଆଉ ଦୁଇଗୋଟି ଅଧିକା ଆଳତି ହୁଏ । ଏହା ରୂପା ବଟାରେ ହୋଇଥାଏ ଓ ଏହାକୁ 'ଜୟ ମଙ୍ଗଳ ଆଳତି' କୁହାଯାଏ ।

ଭୋଗ ଶେଷ ହେବା ପରେ ଅନ୍ୟ ଧୂପ ଭଳି ଉକ୍ତ ଦିନର ନୀତି ସଂପୃକ୍ତ ସେବକ, ମଠାନୁଷ୍ଠାନ, ବ୍ୟକ୍ତି ବିଶେଷମାନଙ୍କୁ ସ୍ୱତ୍ୱଲିପି ଓ ପରମ୍ପରା ପ୍ରକାରେ ସେମାନଙ୍କ ପ୍ରାପ୍ୟ (ଖେଇ) ବାବଦରେ ଉକ୍ତ ମହାପ୍ରସାଦ ଦେଉଳକରଣଙ୍କ ଜରିଆରେ ବଣ୍ଟନ କରାଯାଇଥାଏ ।

ଏଠାରେ ସୂଚନାଯୋଗ୍ୟ ଯେ, ସନ୍ଧ୍ୟା ଧୂପ ପୂଜା ପରେ ଅନୁଷ୍ଠିତ ଜୟ ମଙ୍ଗଳ ଆଳତି ଦର୍ଶନ ନିମନ୍ତେ ସର୍ବସାଧାରଣ ଗମ୍ଭୀରା ଭିତରକୁ ଯିବାକୁ ଚାହିଁଲେ, ପରିମାଣିକ ଟିକେଟ୍ କିଣି ପୋଖରିଆକୁ ଯାଇ ପାରିବେ । ସମ୍ପ୍ରତି ମନ୍ଦିର ପ୍ରଶାସନ ତରଫରୁ ଏହି ଟିକେଟର ମୂଲ୍ୟ ୨୫ ଟଙ୍କା ରଖା ଯାଇଅଛି ।



# ସନ୍ଧ୍ୟା ଧୂପ ପର ସାହାଣମେଲା

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, ସନ୍ଧ୍ୟା ଧୂପ ଶେଷ ହେବା ପରେ ପ୍ରସାଦ ବାହାରି ପାଣି ପଡ଼ି ସଫା ହୋଇଥାଏ ଓ ତା'ପରେ ସାହାଣମେଲା ହୋଇଥାଏ । ରାତ୍ର ୯ଟା ୩୦ ମିନିଟ୍ ମଧ୍ୟରେ ଏହା କରାଯିବା ପାଇଁ ସ୍ଥିରୀକୃତ ହୋଇଛି ଏବଂ ସକାଳ ବେଳା ସାହାଣମେଲା ନୀତି ପରି ସନ୍ଧ୍ୟାରେ ସାହାଣମେଲା ହୋଇଥାଏ । ଏହା ବ୍ୟତୀତ ଅନ୍ୟ କୌଣସି ତଥ୍ୟ ବିଷୟରେ ଉଲ୍ଲେଖ ନାହିଁ ।

ସନ୍ଧ୍ୟା ସମୟରେ ସାହାଣମେଲା ଅନୁଷ୍ଠିତ ନ ହେବାର ମୁଖ୍ୟତଃ ଦୁଇଟି କାରଣ ହୋଇପାରେ । ପ୍ରଥମତଃ, ଦିନକୁ ଦିନ ଜନସଂଖ୍ୟା ପ୍ରବଳ ଭାବରେ ବୃଦ୍ଧି ପାଇବା ଫଳରେ ଚାହିଦା ମୁତାବକ ଭୋଗର ପରିମାଣ ବୃଦ୍ଧି ଓ ଦର୍ଶନ ଇତ୍ୟାଦି ବାବଦରେ ବହୁ ସମୟ ଲାଗୁଛି । ଦ୍ୱିତୀୟତଃ, ସ୍ୱତ୍ୱଲିପି ଓ ଶ୍ରୀମନ୍ଦିରର ଦୈନନ୍ଦିନ ନୀତି ବିବରଣରେ ଉଲ୍ଲେଖ ପ୍ରକାରେ ପ୍ରତ୍ୟହ ନିରୂପିତ ସମୟରେ ନୀତି ସମ୍ପାଦନ ହୋଇପାରି ନଥାଏ । ତେଣୁ ଦୀର୍ଘ ଅନେକ ବର୍ଷ ଧରି ସାଧାରଣ ଦିବସମାନଙ୍କରେ ମୁଖ୍ୟତଃ ଦୁଇଟି ନୀତି ହେଉନାହିଁ । ଯଥା, (୧) ଦିବା ପହୁଡ଼, ଓ (୨) ସନ୍ଧ୍ୟା ଧୂପ ପର ସାହାଣମେଲା । ତେବେ ଶ୍ରୀମନ୍ଦିର ପ୍ରଶାସନ ରାଜ୍ୟ ସରକାରଙ୍କ ନିୟନ୍ତ୍ରଣାଧୀନର ବହୁ ପୂର୍ବରୁ ଏହି ନୀତି ଅନୁଷ୍ଠିତ ହେଉ ନଥିବାର ଜଣାଯାଏ । ଏପରିକି ୧୯୫୨ ମସିହାରେ ଶ୍ରୀମନ୍ଦିର ସ୍ୱତ୍ୱଲିପି ପ୍ରସ୍ତୁତ ପୂର୍ବରୁ ସ୍ପେଶାଲ ଅଫିସର ଶ୍ରୀ ଲକ୍ଷ୍ମଣ ପଣ୍ଡାଙ୍କ ରିପୋର୍ଟ ମୁତାବକ ସେ ସମୟରେ ଶ୍ରୀଜୀଉମାନଙ୍କର ସମସ୍ତ ନୀତି ସମ୍ପାଦିତ ହୋଇପାରୁ ନଥିଲା । ଏପରିକି ସମୟେ ସମୟେ ଚନ୍ଦନ ଲାଗି ନୀତି ମଧ୍ୟ ସମ୍ଭବ ହୋଇପାରୁ ନଥିଲା । ତେବେ ନିରୂପିତ ସମୟ ମଧ୍ୟରେ ସମସ୍ତ ନୀତି ହୋଇପାରୁ ନଥିବାରୁ ଉପରୋକ୍ତ ନୀତି ଦୁଇଟି ସାଧାରଣତଃ ଅନେକ ବର୍ଷ ଧରି ଅନୁଷ୍ଠିତ ହେଉନାହିଁ ।

ଉଲ୍ଲେଖଯୋଗ୍ୟ ଯେ, ବର୍ଷର ଦୁଇଟି ତିଥିରେ ସକାଳ ସମୟରେ ସାହାଣମେଲା ନ ହୋଇ ସନ୍ଧ୍ୟା ଧୂପ ପରେ ଅନୁଷ୍ଠିତ ହୋଇଥାଏ ଯଥା, ଭାଦ୍ରବ କୃଷ୍ଣ ତ୍ରୟୋଦଶୀ ତିଥିରେ କୃଷ୍ଣ ବଳରାମ ବେଶ ଓ ମାଘ ପୂର୍ଣ୍ଣମୀ ତିଥିରେ ଗଜଉଦ୍ଧାରଣ ବେଶ ।



# ମଇଲମ

## (ସନ୍ଧ୍ୟାଧୂପ ପର ମଇଲମ)

ପ୍ରତ୍ୟହ ସନ୍ଧ୍ୟା ଧୂପ ଶେଷ ହେବା ପରେ ତଥା ରାତ୍ର ସାହାଣମେଲା ସରିବା ପରେ ରତ୍ନସିଂହାସନ ଉପରେ ବିରାଜିତ ଶ୍ରୀବିଗ୍ରହମାନଙ୍କର ମଇଲମ ବା ବସ୍ତ୍ର, ପୁଷ୍ପାଦି ଓଲାଗି ହୋଇଥାଏ । ସ୍ୱତ୍ୱଲିପି ଓ ଶ୍ରୀମନ୍ଦିର ନୀତି ପଞ୍ଜିକାରେ ଏହି ନୀତିର ନିରୂପିତ ସମୟ ରାତ୍ର ୧୦ ଘଣ୍ଟା । ସାଧାରଣତଃ ପ୍ରତ୍ୟେକ ଦିନ ସମୟ ଅଭାବ ଓ କେତେକ ନିର୍ଦ୍ଦିଷ୍ଟ କାରଣ ଯୋଗୁ ରାତ୍ର ସାହାଣମେଲା ଦୀର୍ଘ ଅନେକ ବର୍ଷ ଧରି ଅନୁଷ୍ଠିତ ହେଉନାହିଁ । ତେଣୁ ପ୍ରକୃତପକ୍ଷେ ସନ୍ଧ୍ୟା ଧୂପ ଶେଷ ହେବା ପରେ ଏହି ମଇଲମ ନୀତି ଆରମ୍ଭ ହୋଇଥାଏ ।

ସନ୍ଧ୍ୟା ଧୂପ ଶେଷ ପରେ ପାଣି ପଡ଼ି ପରିଷ୍କାର ହେବା ପରେ ପାଳିଆ ଖୁଣ୍ଟିଆ, ଗରାବଡୁ, ପୁଷ୍ପାଳକ, ଚାଙ୍ଗଡ଼ା ମେକାପ, ପାଳିଆ ମେକାପ ଭିତରକୁ ଯାଇଥାନ୍ତି । ସୁଆରବଡୁ କାଠ ଘୋଡ଼ା ସିଂହାସନ ଉପରକୁ ବଢ଼ାଇଥାନ୍ତି । ପୁଷ୍ପାଳକମାନେ ହାତୁଆଣି ନେଇ ଘୋଡ଼ା ଉପରେ ଛିଡ଼ା ହୋଇ ଠାକୁରମାନଙ୍କର ଗଭା, ଶିରକାପଡ଼ା, ଗୁଣା, ଝୁମ୍ପା ଇତ୍ୟାଦି ପୁଷ୍ପହାର ଓ ଠାକୁରମାନେ ଧାରଣ କରିଥିବା ବାରଲାଗି ପାଟ ଓଲାଗି ବା ମଇଲମ କରିଥାନ୍ତି । ଏହାପରେ ଚନ୍ଦନ ଲାଗି ନୀତି ଆରମ୍ଭ ହୋଇଥାଏ ।



# ଚନ୍ଦନ ଲାଗି

ମହାପ୍ରଭୁମାନଙ୍କର ସନ୍ଧ୍ୟା ଧୂପ ଶେଷ ହେବା ପରେ ସୁଆରବଡୁ ସେବକ ପାଣି ପକାଇ ରତ୍ନସିଂହାସନ ସମ୍ମୁଖ ଭିତର ଗମ୍ଭୀରା ପରିଷ୍କାର କରିଥାନ୍ତି । ଏହାପରେ ପାଳିଆ ପୁଷ୍ପାଳକମାନେ ରତ୍ନସିଂହାସନ ଉପରକୁ ଉଠି ଠାକୁରମାନଙ୍କର ମଇଲମ କରନ୍ତି ଓ ଶାଢ଼ି ଖଣ୍ଡୁଆ ପିନ୍ଧାଇଥାନ୍ତି । ମଇଲମ ପରେ ଠାକୁରଙ୍କ ଚନ୍ଦନ ଲାଗି ନୀତି ଅନୁଷ୍ଠିତ ହୋଇଥାଏ । ଶ୍ରୀମନ୍ଦିର ସ୍ୱତ୍ୱଲିପିର ଉଲ୍ଲେଖ ପ୍ରକାରେ ରାତ୍ର ୧୦ ଘଣ୍ଟା ସମୟେ ମଇଲମ ହୋଇ ଚନ୍ଦନ ଲାଗି ହେବାର ନିୟମ । ସେହିପରି ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକାରେ ଏହି ନୀତି ରାତ୍ର ୧୦ଟାରୁ ୧୦ଟା ୩୦ ମିନିଟ୍ ମଧ୍ୟରେ କରାଯିବା ପାଇଁ ନିର୍ଦ୍ଧାରିତ ହୋଇଛି ।

ସାଧାରଣତଃ ନିମ୍ନଲିଖିତ ସେବକମାନଙ୍କ ଦ୍ୱାର ଏହି ନୀତି ସମ୍ପନ୍ନ ହୋଇଥାଏ । (୧) ସୁଆରବଡୁ, (୨) ପୁଷ୍ପାଳକ, (୩) ଘଟୁଆରି, (୪) ମୁଦୁଲି, (୫) ପାଳିଆ ମେକାପ, (୬) ପାଳିଆ ପଢ଼ିଆରି, (୭) ଗରାବଡୁ, (୮) ହଡ଼ପ ନାୟକ, (୯) ପାଳିଆ ଖୁଣ୍ଟିଆ । ଚନ୍ଦନ ଲାଗି ନୀତି ପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ କର୍ପୂର, କେଶର, ଚନ୍ଦନ ଆଦି ଯୋଗାଯାଏ । ପୂର୍ବେ କସ୍ତୁରୀର ଅଭାବ ପରିଲକ୍ଷିତ ହେଉ ନଥିବା ଯୋଗୁଁ ପ୍ରତ୍ୟହ ଚନ୍ଦନ ଲାଗି ନୀତିରେ କସ୍ତୁରୀ ଯୋଗା ଯାଉଥିଲା । ଦୀର୍ଘ ଅନେକ ବର୍ଷ ଧରି କସ୍ତୁରୀ କ୍ୱଚିତ୍ ଉପଲବ୍ଧ ହେଉଥିବାରୁ ଠାକୁରମାନଙ୍କର କେତେକ ଗୁପ୍ତ ନୀତି ଓ ବନକ ଲାଗି ନୀତି ବ୍ୟତୀତ ଅନ୍ୟ ସମୟରେ କସ୍ତୁରୀ ଯୋଗାଇବା ସମ୍ଭବପର ହୋଇପାରୁ ନାହିଁ । ଚନ୍ଦନ ଘଟୁଆରି ଶ୍ରୀମନ୍ଦିର କାର୍ଯ୍ୟାଳୟ ଠାରୁ ଗ୍ରହଣ କରିଥିବା ଚନ୍ଦନ କାଠ ଘୋରି ଚନ୍ଦନ ଦେଇଥାନ୍ତି । ଠାକୁରଙ୍କ ଭଣ୍ଡାରରୁ ମୁଦୁଲି ୩ ଗୋଟି ରୂପା ପିଙ୍ଗଣ ଦିଏ ।

ଶ୍ରୀବିଗ୍ରହମାନଙ୍କ ଚନ୍ଦନ ଲାଗି ପୂର୍ବରୁ ମଇଲମ ସମୟରେ ସକାଳ ଅବକାଶ ନୀତି ପରି ଖୁଣ୍ଟିଆ ସେବକ ଖଣ୍ଡୁଆ ଧରି ଶ୍ରୀଛାମୁ (ଠାକୁରଙ୍କ ସମ୍ମୁଖରେ) ଠିଆ ହୋଇଥାନ୍ତି । ଘଟୁଆରି ସେବକ ପ୍ରାୟ ଏକ ଚକ ଓଳି ଚନ୍ଦନ ଆଣିବା ସଙ୍ଗେ ସଙ୍ଗେ ଭଣ୍ଡାର ଦ୍ୱାର ଠାରେ ଥିବା ଶିଳାରେ କର୍ପୂର ଓ କେଶର ବାଟିଥାନ୍ତି । ତତ୍ପରେ ମୁଦୁଲି ଠାରୁ ୩ଗୋଟି ରୂପା ପିଙ୍ଗଣ ନେଇ ତହିଁରେ ସେ ସମସ୍ତ ଜିନିଷାଦ୍ ରଖିଥାନ୍ତି । ମଇଲମ ବଢ଼ିବା (ଶେଷ) ପରେ ପାଳିଆ ମେକାପ ହାତ ଧୋଇ ଘଟୁଆରି ଠାରୁ ଉକ୍ତ ରୂପା ପିଙ୍ଗଣ ତିନି ଗୋଟି ନେଇ ଗମ୍ଭୀରା ଭିତରକୁ ଯାଆନ୍ତି । ଏହି ସମୟରେ ପାଳିଆ ପଢ଼ିଆରି ଆଗରେ ବେତ ଧରି ''ଆଡ଼େଇ ହୁଅ ଆଡ଼େଇ ହୁଅ'' କହି ସଂପୃକ୍ତ ସେବକ ଦ୍ୱୟ ସିଂହାସନ ତଳକୁ ଯାଇଥାନ୍ତି । ପାଳିଆ ମେକାପ ଓ ପଢ଼ିଆରି ସେଠାରେ ପହଞ୍ଚିବା ପରେ ଗରାବଡୁ ସେବକ ପାଳିଆ ପୁଷ୍ପାଳକମାନଙ୍କୁ ହାତ ଧୋଇବାକୁ ପାଣି ଦିଅନ୍ତି । ପାଳିଆ ମେକାପ ତିନି ବାଡ଼ରେ ପୁଷ୍ପାଳକମାନଙ୍କୁ ଚନ୍ଦନ ପିଙ୍ଗଣ ବଢ଼ାନ୍ତି । ପୁଷ୍ପାଳକ ସେବକ

ତ୍ରୟ ଠାକୁରମାନଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲାଗି କରନ୍ତି । ସୂଚନାଯୋଗ୍ୟ ଯେ, ପ୍ରତ୍ୟହ ଚନ୍ଦନଲାଗି ନୀତି ପାଇଁ ପ୍ରାୟ ୨୨୫ ଗ୍ରାମ୍ ଓଜନର ଚନ୍ଦନ କାଠ ବ୍ୟବହୃତ ହୋଇଥାଏ । ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀସୁଦର୍ଶନ, ଭୂଦେବୀ, ଶ୍ରୀଦେବୀ ଓ ମାଧବ ବିଗ୍ରହଙ୍କର ଚନ୍ଦନଲାଗି ନୀତି ସମୟରେ ଶ୍ରୀଜଗନ୍ନାଥଙ୍କ ପାର୍ଶ୍ୱରେ ପାଳିଆ ଖୁଣ୍ଟିଆ ବେତ ଧରି 'ମଣିମା' ଡାକ ଦେଉଥାନ୍ତି । ହଡ଼ପ ନାୟକ ଠାକୁରମାନଙ୍କୁ ଏହି ସମୟରେ ବିଡ଼ିଆ ମଣୋହି କରିଥାନ୍ତି ।

ଚନ୍ଦନ ଲାଗି ନୀତି ସମୟରେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପରିମାଣିକ ଟିକେଟର ବ୍ୟବସ୍ଥା କରା ଯାଇଥାଏ । ସମ୍ପ୍ରତି ଏହି ଟିକେଟ୍‌ର ମୂଲ୍ୟ ୨୫ ଟଙ୍କା ରଖାଯାଇଛି । ଜନସାଧାରଣ ଏହି ସମୟରେ ପରିମାଣିକ ଟିକେଟ୍ କାଟି ରତ୍ନସିଂହାସନ ନିକଟକୁ ଯାଇ ଠାକୁରମାନଙ୍କର ପବିତ୍ର ଚନ୍ଦନ ଲାଗି ନୀତି ଦର୍ଶନ ଲାଭ କରିବାର ସୁଯୋଗ ପାଇଥାନ୍ତି ।

ରତ୍ନସିଂହାସନାଧିଷ୍ଠିତ ଠାକୁରମାନଙ୍କର ପ୍ରତ୍ୟହ ଚନ୍ଦନ ଲାଗି ବ୍ୟତୀତ ବର୍ଷର ବିଭିନ୍ନ ପର୍ବପର୍ବାଣୀ ଓ ସ୍ୱତନ୍ତ୍ର ଦିନମାନଙ୍କରେ ସର୍ବାଙ୍ଗ ନୀତିରେ ଚନ୍ଦନ ଲାଗି ହୋଇଥାଏ । ତନ୍ମଧ୍ୟରେ ପ୍ରତି ଏକାଦଶୀ, ଶ୍ରୀରାମ ନବମୀ, ଅକ୍ଷୟ ତୃତୀୟା, ନୀଳାଦ୍ରି ମହୋଦୟ, ପୁଷ୍ୟାଭିଷେକ, ୪୨ ଦିନ ଧରି (୨୧ + ୨୧) ବାହାର ଓ ଭିତର ଚନ୍ଦନ ଯାତ୍ରା ପ୍ରଭୃତି ଦିବସମାନଙ୍କରେ ଠାକୁରମାନଙ୍କର ଅଧିକ ଚନ୍ଦନ ଲାଗି ନୀତି ହୋଇଥାଏ ।



# ବଡ଼ ସିଂହାର ବେଶ

ରତ୍ନସିଂହାସନରେ ବିରାଜିତ ଶ୍ରୀବିଗ୍ରହମାନଙ୍କର ବଡ଼ ସିଂହାର ବେଶ ପରମ୍ପରା ଓ ସ୍ୱତ୍ୱଲିପି ଅନୁଯାୟୀ ପ୍ରତ୍ୟହ ଅନୁଷ୍ଠିତ ହୋଇଥାଏ । କେବଳ ଅଣବସର, ଗୁଣ୍ଡିଚା ଯାତ୍ରା, ସ୍ନାନ ଯାତ୍ରା ଇତ୍ୟାଦି ଦିବସମାନଙ୍କରେ ଠାକୁରମାନେ ରତ୍ନସିଂହାସନରେ ବିଜେ କରୁ ନଥିବା ଯୋଗୁଁ ଏହି ଦିନମାନଙ୍କରେ ସମସ୍ତେ ସମୟେ ବେଶ ହୋଇନଥାଏ । ସେହିପରି ଗୁଣ୍ଡିଚା ଘରେ ଠାକୁରମାନେ ଅବସ୍ଥାନ କରୁଥିବା ସମୟରେ ଗୁଣ୍ଡିଚା ମନ୍ଦିର ଗର୍ଭଗୃହସ୍ଥ ରତ୍ନସିଂହାସନରେ ବଡ଼ ସିଂହାର ବେଶ ଅନୁଷ୍ଠିତ ହୋଇଥାଏ ।

ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପିରେ ଠାକୁରମାନଙ୍କ ବଡ଼ ସିଂହାର ବେଶ ରାତ୍ର ୧୦ଟା ୩୦ ମିନିଟ୍ ସମୟରେ କରାଯିବା ବିଧେୟ ବୋଲି ଉଲ୍ଲେଖ ରହିଛି । ସେହିଭଳି ଶ୍ରୀମନ୍ଦିରର ଦୈନିକ ପଞ୍ଜିକାର ନୀତି ବିବରଣ ଫର୍ମରେ ବଡ଼ ସିଂହାର ବେଶର ନିର୍ଦ୍ଧାରିତ ସମୟ ରାତ୍ର ୧୧ ଘଣ୍ଟ ବୋଲି ମୁଦ୍ରିତ ହୋଇଅଛି । ସ୍ୱତ୍ୱଲିପିରୁ ଜଣାଯାଏ ଯେ, ଏହି ବେଶ ପାଇଁ ଶ୍ରୀରାମ ଦାସ ମଠ ଫୁଲର କରପଲ୍ଲବ, କୁଣ୍ଡଳ ଓ ତଡ଼ଗି ଯୋଗାଏ । ଏମାର ମଠ ଫୁଲର ଚନ୍ଦ୍ରିକା ଯୋଗାଏ । ଏହି ଫୁଲ ଅଳଙ୍କାର ଯୋଗାଇବା ସକାଶେ ଉକ୍ତ ଦୁଇ ମଠ ଖଞ୍ଜା ଜମି ଭୋଗ କରନ୍ତି । ବାସ୍ତବ କ୍ଷେତ୍ରରେ ଅନେକ ବର୍ଷ ଧରି ଏହି ପୁଷ୍ପ ଅଳଙ୍କାର ଆଦି ଉପରୋକ୍ତ ମଠମାନେ ଯୋଗାଉ ନଥିବା ଜଣାଯାଏ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦୈନନ୍ଦିନ ନୀତି ମଧ୍ୟରେ ଯେତେ ବେଶ ଅନୁଷ୍ଠିତ ହୁଏ, ତନ୍ମଧ୍ୟରେ ବଡ଼ ସିଂହାର ବେଶ ହିଁ ସର୍ବୋତ୍କୃଷ୍ଟ । ବେଶ ନିମନ୍ତେ ଚାଙ୍ଗଡ଼ା ମେକାପ ସେବକ ଗୀତ ଗୋବିନ୍ଦ ଖଣ୍ଡୁଆ ପାଟ ବସ୍ତ୍ର ଚାଙ୍ଗଡ଼ା ଘରୁ ଯୋଗାଇଥାନ୍ତି । ଏହି ପାଟବସ୍ତ୍ରରେ ଗୀତ ଗୋବିନ୍ଦ ଶ୍ଳୋକ ବୁଣା ଯାଇଥାଏ । ଏଭଳି ବସ୍ତ୍ର ଭାରତର ଅନ୍ୟ କୌଣସି ଦେବ ମନ୍ଦିରରେ ଦୃଶ୍ୟମାନ ହୁଏ ନାହିଁ । ବର୍ଷକୁ ୮ ସଜ (ସେଟ୍) ପାଟ ଆବଶ୍ୟକ ପଡ଼ିଥାଏ । ବର୍ତ୍ତମାନ ଏହି ସଜ ବା ସେଟ୍ ବସ୍ତ୍ରର ଆନୁମାନିକ ମୂଲ୍ୟ ପ୍ରାୟ ୧୬୫୦୦ ଟଙ୍କା ପଡୁଅଛି । ଖୋର୍ଦ୍ଧା ଜିଲ୍ଲା ଓ କଟକ ଜିଲ୍ଲା ତିଗିରିଆର ନୂଆ ପାଟଣା ଗ୍ରାମରେ ଏହି ବସ୍ତ୍ର ନିର୍ମିତ ହେଉଅଛି । କେତେକ ବଦାନ୍ୟ ବ୍ୟକ୍ତି ଠାକୁରମାନଙ୍କ ଏହି ଦିବ୍ୟ ବେଶ ନିମନ୍ତେ ବାରଲାଗି ଖଣ୍ଡୁଆ ପାଟ ଶ୍ରୀମନ୍ଦିର ପ୍ରଶାସନକୁ ଦାନ ସୂତ୍ରରେ ଅର୍ପଣ କରିଥାନ୍ତି ।

ଏହି ବସ୍ତ୍ରର ମାପ ଓ ବିବରଣ ନିମ୍ନରେ ପ୍ରଦତ୍ତ କରାଗଲା -

ଗୀତ ଗୋବିନ୍ଦ ଖଣ୍ଡୁଆ ପାଟ ସଜ

(କ) ଫୁଟା - ୨୪ ହାତ ଲମ୍ବା ୩୬ ଇଞ୍ଚ ଓସାର - ୨ ମୂର୍ତ୍ତି (ଜଗନ୍ନାଥ, ବଳଭଦ୍ରଙ୍କ ପାଇଁ)

(ଖ) ପହରଣ - ୧୪ ହାତ ଲମ୍ବା ୩୬ ଇଞ୍ଚ ଓସାର - ୩ ମୂର୍ତ୍ତି (ଜଗନ୍ନାଥ, ବଳଭଦ୍ର, ସୁଦର୍ଶନ)

ଶାଢ଼ୀ- ୧୨ ହାତ ଲମ୍ବା ୩୬ ଇଞ୍ଚ ଓସାର - ୩ ମୂର୍ତ୍ତି (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା)

କଣି - ମୋଟ ୧୦ ହାତ ଲମ୍ବା ୩୬ ଇଞ୍ଚ ଓସାର ମଧ୍ୟରୁ ୨-୧/୨ (ଅଢ଼େଇ) ହାତ ଲେଖାଏଁ ୪ ଖଣ୍ଡ ହୋଇଥାଏ । ଉପରୋକ୍ତ ୪ ଖଣ୍ଡ କଣି ବସ୍ତ୍ର ଶ୍ରୀଦେବୀ, ଭୂଦେବୀ, ଶ୍ରୀସୁଦର୍ଶନ ଓ ଶ୍ରୀମାଧବ ପିନ୍ଧିଥାନ୍ତି ।

ଖଣ୍ଡୁଆ -୮ ହାତ ଲମ୍ବ ଓ ୫୪ ଇଞ୍ଚ ଓସାର - ୩ ମୂର୍ତ୍ତି (ତିନି ମୁଖ୍ୟ ବିଗ୍ରହଙ୍କ ପାଇଁ)

ଠାକୁରମାନଙ୍କ ଚନ୍ଦନ ଲାଗି ନୀତି ସରିବା ପରେ ଚାଙ୍ଗଡ଼ା ମେକାପ ସେବକ ମଇଲମ ଲୁଗା ପୃଷ୍ପାଳକମାନଙ୍କୁ ବଢ଼ାନ୍ତି । ତିନିବାଡ଼ର ପୁଷ୍ପାଳକ ସେବକ ଠାକୁରମାନଙ୍କୁ ଉପରିବର୍ଣ୍ଣିତ ଦ୍ୱାରଲାଗି ଗୀତ ଗୋବିନ୍ଦ ଖଣ୍ଡୁଆ ପାଟ ବସ୍ତ୍ର ପିନ୍ଧାନ୍ତି ଓ ମାଳଫୁଲରେ ବେଶ କରନ୍ତି । ଉଲ୍ଲେଖଯୋଗ୍ୟ ଯେ, ରତ୍ନସିଂହାସନରେ ବିରାଜିତ ସପ୍ତ ବିଗ୍ରହଙ୍କ ମଧ୍ୟରୁ ମୁଖ୍ୟ ତିନି ବିଗ୍ରହ ଯଥା (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା) ବଡ଼ ସିଂହାର ବେଶରେ 'ଶିରକପଡ଼ା' ବସ୍ତ୍ର ଧାରଣ କରିଥାନ୍ତି । ଏହି ବସ୍ତ୍ରର ରଙ୍ଗ ଧଳା ଅଟେ । କଳା ଧଡ଼ି ଯୁକ୍ତ ଧଳା ଶିରକପଡ଼ା ବଳଭଦ୍ରଙ୍କୁ, ହଳଦିଆ ରଙ୍ଗ ଧଡ଼ିର ଶିରକପଡ଼ା ଜଗନ୍ନାଥଙ୍କୁ ଓ ନାଲିଧଡ଼ିଆ ଧଳା ଶିରକପଡ଼ା ମା' ସୁଭଦ୍ରାଙ୍କୁ ଲାଗି ହୋଇଥାଏ । ଉକ୍ତ ବେଶରେ ଠାକୁରମାନେ ପିନ୍ଧୁଥିବା ବିଭିନ୍ନ ପୁଷ୍ପ ଅଳଙ୍କାର ମଧ୍ୟରେ ମୁଖ୍ୟତଃ ଗଭା, ଚନ୍ଦ୍ରିକା, ଅଳକା, ତିଳକ, ଝୁମ୍ପା, ନାକୁଆସି, ଦୟଣା, ଅଧରମାଳ, ମକରକୁଣ୍ଡଳ, ଶ୍ରୀପୟରମାଳା, ହୃଦୟ ପଦକ, କଳିପଦକ, କୌସ୍ତୁଭ ପଦକ, କରପଲ୍ଲବ ଆଦି ପ୍ରଧାନ । ଉପରିବର୍ଣ୍ଣିତ ପୁଷ୍ପ ଅଳଙ୍କାର ଗୁଡ଼ିକ ପୁଷ୍ପ ଶିଳ୍ପୀମାନଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଶୈଳୀରେ ତଥା ଶୁଦ୍ଧ ପୂତ ଭାବରେ ଶ୍ରୀମନ୍ଦିରର ନୀଳାଚଳ ଉପବନ, କୋଇଲି ବୈକୁଣ୍ଠ ଉପବନ ଓ ଭିତର ବେଢ଼ାରେ ଥିବା ପାଦପଦ୍ମ ମନ୍ଦିରଠାରେ ନିର୍ମିତ ହୋଇଥାଏ । ବଡ଼ ସିଂହାର ବେଶରେ ପ୍ରଥମେ ଠାକୁରମାନଙ୍କ ବସ୍ତ୍ରଲାଗି ହେବା ପରେ ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନଙ୍କ ମସ୍ତକରେ ଫୁଲ ଓ ତୁଳସୀରେ ନିର୍ମିତ ଗଭା ଲାଗି ହୋଇଥାଏ । ଗଭା ଉପରେ ଚନ୍ଦ୍ରିକା ରହିଥାଏ । ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ କପାଳରେ ତିଳକ ଶୋଭା ପାଇଥାଏ । ଏତଦ୍‌ବ୍ୟତୀତ ତିନି ମୁଖ୍ୟ ବିଗ୍ରହମାନଙ୍କ କପାଳ ଦେଶରେ ଯଥାକ୍ରମେ ବଳଭଦ୍ରଙ୍କର ୧୦ଟି, ସୁଭଦ୍ରାଙ୍କର ୮ଟି ଏବଂ ଜଗନ୍ନାଥଙ୍କର ୧୨ଟି ଅଳକା ଲାଗି ହୁଏ ଓ ନାସାରେ ଝୁମ୍ପା ଓ ଗୁଣା ଧାରଣ କରିଥାନ୍ତି । ସେହିପରି ଶ୍ରୀବିଗ୍ରହମାନଙ୍କ ଗଳା ଦେଶରେ ଅଧରମାଳା ଲାଗି ହୁଏ । ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ କର୍ଣ୍ଣ ଦେଶରେ ଦୁଇଟି କରି ପୁଷ୍ପ କୁଣ୍ଡଳ ଏବଂ ସୁଭଦ୍ରାଙ୍କ ଶିରରେ ଦୁଇ ପାର୍ଶ୍ୱରେ ତଡ଼ଗି ଲାଗି ହୁଅନ୍ତି । ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଶ୍ରୀଭୁଜରେ ୨ଟି ଲେଖାଏଁ କରପଲ୍ଲବ ଶୋଭା ପାଇଥାଏ । ଠାକୁରଙ୍କ ନାଭି ଦେଶରେ ନଖ ତୁଳସୀ ଏବଂ ଭୁଜରୁ ପାଦଦେଶ ପର୍ଯ୍ୟନ୍ତ ପୁଷ୍ପହାର (ଶ୍ରୀପୟର) ଓ ଚଉସରାମାଳରେ ଠାକୁରମାନେ ଭୂଷିତ ହୋଇଥାନ୍ତି । ଚତୁର୍ଦ୍ଧାମୂର୍ତ୍ତିଙ୍କ ବ୍ୟତୀତ ଶ୍ରୀଦେବୀ ଓ ଭୂଦେବୀ ତୁଳସୀ ବିହୀନ ସୁବାଷିତ ପୁଷ୍ପ ଓ ଖଣ୍ଡୁଆ ପାଟ ତଥା ମାଧବବିଗ୍ରହ ଗଭାରେ

ତୁଳସୀ ଓ ହୃଦୟରେ ଫୁଲମାଳରେ ବେଶ ହୋଇଥାନ୍ତି । ଶ୍ରୀମନ୍ଦିର ଦୁଇ ମୁଖ୍ୟ ଉପବନ ଓ ନରେନ୍ଦ୍ର କୋଣ ଉପବନରୁ ଏହି ଫୁଲ ଦୈନିକ ସଂଗୃହୀତ ହୋଇଥାଏ । ପ୍ରଶାସନ ତରଫରୁ ଏହିସବୁ ପୁଷ୍ପ ଅଳଙ୍କାର ତଥା ମାଳ ଯୋଗାଇ ଦିଆ ଯାଇଥାଏ । ଖୁଣ୍ଟିଆ ସେବକମାନେ ମାଳ ଫୁଲର ପବିତ୍ରତାକୁ ରକ୍ଷା କରି ନିଷେଧ ଥିବା ଫୁଲ ଯେପରି ଲାଗି ନହୁଏ ତାହା ଯାଞ୍ଚ କରି ବେଶ ସମୟରେ ପୁଷ୍ପାଳକ ସେବକମାନଙ୍କୁ ଯୋଗାଇ ଦେଇଥାନ୍ତି । ସୂଚନାଯୋଗ୍ୟ ଯେ, ଶ୍ରୀମନ୍ଦିରର ଉପବନ ଓ ବ୍ୟକ୍ତି ବିଶେଷଙ୍କ ବାଡ଼ି ବଗିଚାରୁ ତରାଟ, ଟଗର, ପଦ୍ମ, ଚମ୍ପା, ଗେଣ୍ଡୁ, ମାଳତୀ, ଗୋଲାପ, ଜୁଇ, ଜାଇ, ମଲ୍ଲୀ, କୁସୁମ, କୁନ୍ଦ ପ୍ରଭୃତି ପୁଷ୍ପ ଓ ତୁଳସୀ, ଦୟଣା, ରଂଗଣୀରେ ନାନାପ୍ରକାରର ପୁଷ୍ପ ଅଳଙ୍କାର ନିର୍ମିତ ହୋଇଥାଏ ।

ବଡ଼ ସିଂହାର ବେଶରେ ଠାକୁରମାନେ କେବଳ ଫୁଲରେ ବେଶ ହୋଇଥାନ୍ତି । ବେଶ ଶେଷ ହେବା ପରେ ପୁଷ୍ପାଳକ ସେବକମାନେ ଠାକୁରମାନଙ୍କୁ କର୍ପୂର ଲାଗି କରନ୍ତି ଓ ସିଂହାସନରେ ଠାକୁରମାନଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ଲଗାଇ ସିଂହାସନରୁ ଓହ୍ଲାଇ ଚାଲି ଯାଆନ୍ତି । ତତ୍ପରେ ପାଣି ପଡ଼ି ବଡ଼ ସିଂହାର ଧୂପର ଆୟୋଜନ ହୁଏ ।

ଦାରୁବ୍ରହ୍ମ ରୂପୀ ଶ୍ରୀବିଗ୍ରହମାନଙ୍କର ବଡ଼ ସିଂହାର ବେଶ ଅତ୍ୟନ୍ତ ଚିତ୍ତାକର୍ଷକ ତଥା ଆନନ୍ଦଦାୟକ । ବିଳମ୍ବିତ ରାତ୍ରରେ ଅନୁଷ୍ଠିତ ହେଉଥିବା ଏହି ବେଶ ଦର୍ଶନ କରିବା ନିମିତ୍ତ ଅନେକ ଭକ୍ତ ଶ୍ରୀମନ୍ଦିର ଜଗମୋହନରେ ଉପସ୍ଥିତ ହୋଇଥାନ୍ତି । ଏପରିକି ଜନଶ୍ରୁତି ଅନୁଯାୟୀ ଦେବତାମାନେ ସ୍ୱୟଂ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଏହି ଦିବ୍ୟ ବେଶ ସଂଦର୍ଶନ କରିବା ନିମିତ୍ତ ଗୋପନରେ ଶ୍ରୀମନ୍ଦିରରେ ଆର୍ବିଭାବ ହୋଇଥାନ୍ତି ବୋଲି କଥିତ ଅଛି । ବାସ୍ତବିକ୍ ଯେ କୌଣସି ଭକ୍ତ ଏହି ବେଶ ଦର୍ଶନ କରିବେ, ତାଙ୍କ ମନରେ ନିଶ୍ଚିତ ରୂପେ ଆନନ୍ଦ ତଥା ଶାନ୍ତି ମନୋଭାବ ଉଦ୍ରେକ ହେବ ।



# ବଡ଼ ସିଂହାର ଧୂପ

ଦୈନନ୍ଦିନ ଶ୍ରୀବିଗ୍ରହମାନଙ୍କ ଉଦ୍ଦେଶ୍ୟରେ ହେଉଥିବା 'ରାଜ ଭୋଗ' ବା 'କୋଠ ଭୋଗ' ମଧ୍ୟରେ ବଡ଼ ସିଂହାର ଧୂପ ହେଉଛି ସର୍ବଶେଷ ଭୋଗ । ବଡ଼ ସିଂହାର ବେଶ ସରିବା ପରେ ଏହି ଭୋଗ ଶ୍ରୀମନ୍ଦିରର ଗର୍ଭଗୃହ ତଥା ରତ୍ନସିଂହାସନ ସମୀପରେ ହୋଇଥାଏ । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି (Record of Rights) ମୁତାବକ ବଡ଼ ସିଂହାର ଧୂପ ରାତ୍ର ୧୧ଟା ୧୫ ମିନିଟ୍‌ରେ ହେବା ବିଧେୟ । ଅପରପକ୍ଷରେ ସ୍ୱତ୍ୱଲିପି ପ୍ରଚଳନର କିଛି ବର୍ଷ ପରେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ମୁଦ୍ରିତ ଦୈନିକ ପଞ୍ଜିକାରେ ଏହି ଧୂପର ସମୟ ରାତ୍ର ୧୧ଟା ୩୦ ମିନିଟ୍ ବୋଲି ନିର୍ଦ୍ଧାରିତ ହୋଇଛି ।

ଉଲ୍ଲେଖଯୋଗ୍ୟ ଯେ, ଅନ୍ୟ ତିନି ଧୂପ ଯଥା ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପ 'ଷୋଡ଼ଶ ଉପଚାର'ରେ ପୂଜା ହେଉଥିବା ବେଳେ ବଡ଼ ସିଂହାର ଧୂପ 'ପଞ୍ଚ ଉପଚାର'ରେ ପୂଜା ହୋଇଥାଏ । ଏହି ଧୂପରେ ସିଂହାସନ ତଳେ ପୂଜା ଠା' ହୁଏ ଏବଂ ଭୋଗ ସ୍ଥାନରେ ମୁରୁଜ କଟାଯାଏ ନାହିଁ । ଏପରିକି ପୂଜାପଣ୍ଡାମାନେ ଅନ୍ୟ ତିନି ଧୂପରେ ସିଂହାସନ ଉପରେ ବସିଥିବା ବେଳେ ଏହି ଧୂପ ସମୟରେ ସିଂହାସନେ ତଳେ ବସି ପୂଜା କରିଥାନ୍ତି । ରୋଷ ପାଇକ ରୂପା ପିଙ୍ଗଣରେ ଖାଲି ଘିଅ ଆଣି ଠାକୁରମାନଙ୍କ ଭୋଗ ସକାଶେ ଦିଅନ୍ତି । ଭୋଗ ଶେଷରେ 'ଟେରା' ଫିଟିଲା ପରେ ଆଳତି ହୁଏ ନାହିଁ । ଟେରା ପଡ଼ିବା ଆଗରୁ ଧୂପ ଦୀପ ଦିଆ ହୁଏ । ଏହା ବ୍ୟତୀତ ଅନ୍ୟ ସମସ୍ତ ନୀତି ଅନ୍ୟାନ୍ୟ ଧୂପର ନୀତି ପରି ହୁଏ । ୩ ଜଣ ପୂଜାପଣ୍ଡାଙ୍କ ବ୍ୟତୀତ ଅନ୍ୟାନ୍ୟ ସେବକମାନଙ୍କ ମଧ୍ୟରେ ସୁଆରବଡୁ, ପ୍ରତିହାରୀ, ପାଣିଆପଟ, ପ୍ରଧାନି, ପାଳିଆ ମହାସୁଆର, ପନ୍ତିବଡୁ, ରୋଷପାଇକ, ପତ୍ରିବଡୁ, ଗରାବଡୁ, ଚାଙ୍ଗଡ଼ା ମେକାପ, ଘଟୁଆରି, ପରୀକ୍ଷାବଡୁ, ପାଳିଆ ମେକାପ, ପାଳିଆ ଖୁଣ୍ଟିଆ, ହଡ଼ପ ନାୟକ, ବିଡ଼ିଆ ଯୋଗାଣିଆ, ପୁରାଣ ପଣ୍ଡା, ଗୋଛିକାର, ଘଣ୍ଟୁଆ, ବଜନ୍ତୀ ଇତ୍ୟାଦିଙ୍କର ଆବଶ୍ୟକତା ପଡ଼ିଥାଏ ।

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ହୋଇଥିବା ବିବରଣୀରୁ ଜଣାଯାଏ ଯେ, ଅତୀତରେ ଏହି ଧୂପରେ କେତେକ ନିର୍ଦ୍ଦିଷ୍ଟ ପ୍ରକାରର ପିଷ୍ଟକ ଭୋଗ ହେଉଥିଲା । ନିମ୍ନରେ ତାହା ପ୍ରଦତ୍ତ କରାଗଲା :-

| | ଭୋଗର ନାମ | ପରିମାଣ | ଖୋଇ | ତାଟ | କୋରକ |
|---|---|---|---|---|---|
| (୧) | ବଡ଼ ଅମାଲୁ | ୩୪ | ୨୪ | ୭ | ୩ |
| (୨) | ସାନ ଅମାଲୁ | ୬୨ | ୪୨ | ୧୧ | ୯ |
| (୩) | ଟାକୁଆ | ୮ | ୩ | ୧ | ୪ |
| (୪) | ଭୋଗ ସରପୁଲି | ୧୧ | ୭ | ୧ | ୪ |
| (୫) | ସୁଆର ପିଠା | ୧ | ୧ | - | - |

| | | | | | |
|---|---|---|---|---|---|
| (୬) | ରୋଷ ପାଇକ ପିଠା | ୨ | ୨ | - | - |
| (୭) | ଖଇର ଚୂଳ | ୧୩ | ୯ | ୧ | ୩ |
| (୮) | କଦଳୀ ବଡ଼ା | ୧୫ | ୪ | - | ୧୧ |
| (୯) | କ୍ଷୀରି | ୬ | ୪ | - | ୨ |
| (୧୦) | କାଞ୍ଜି | ୩ | - | - | ୩ |
| (୧୧) | ଟଭା ପଖାଳ | ୧୦ | ୯ | - | ୧ |

ଉପରୋକ୍ତ ବିଭିନ୍ନ ଭୋଗର ଦ୍ରବ୍ୟର ତାଲିକା ପ୍ରକାରେ ସେତେବେଳେ ମୋଟ୍ ୧୬୬ଟି ଭୋଗ ହେଉଥିଲା ।

ଶ୍ରୀମନ୍ଦିର ରେକର୍ଡ଼ ରୁମରେ ଥିବା ଏକ ପ୍ରାଚୀନ ଲେଖା ଅନୁଯାୟୀ ୧୯୦୮ ମସିହାରେ ବଡ଼ ସିଂହାର ଧୂପର ଏକ ତାଲିକା ମଧ୍ୟରେ ପଖାଳ - ୧୧, କାଞ୍ଜି - ୩, କଦଳୀ ବଡ଼ା - ୧୫, ସାନ ଅମାଲୁ - ୬୪, ବଡ଼ ଅମାଲୁ - ୩୧, ଚଡ଼ାଇନେଦା - ୬, ଟାକୁଆ - ୩, ସରପୁଳି - ୨୨, ପିଠା - ୬, ଛେନା କୋରା - ୩ । କାଳକ୍ରମେ ବିଭିନ୍ନ କାରଣରୁ ଠାକୁରମାନଙ୍କ ନିକଟରେ ହେଉଥିବା ଉପରିଲିଖିତ ଭୋଗର ପରିମାଣ କମିଯିବା ସଙ୍ଗେ ସଙ୍ଗେ କେତେକ ଭୋଗ ମଧ୍ୟ ଲୋପ ପାଇଯାଇଛି । ପୁନଶ୍ଚ ସ୍ୱତ୍ୱଲିପି ପ୍ରସ୍ତୁତି ବେଳେ ତଥା ସେହି ସମୟରେ (୧୯୫୨ ମସିହାରୁ ୧୯୫୪ ମସିହା ମଧ୍ୟରେ) ଶ୍ରୀମନ୍ଦିରରେ ଠାକୁରମାନଙ୍କ ବଡ଼ ସିଂହାର ଭୋଗରେ ଲାଗୁଥିବା ଭୋଗ ଦ୍ରବ୍ୟ ମଧ୍ୟରେ କଦଳୀ ବଡ଼ା - ୧୫, କ୍ଷୀରି - ୬, ସାକରା - ୭, ପିଠା - ୫, କାଞ୍ଜି - ୨ ।

ଶ୍ରୀମନ୍ଦିର କାର୍ଯ୍ୟାଳୟ ଓ ଦେଉଳକରଣ ସେବକଙ୍କ ସୂତ୍ରରୁ ସଂଗ୍ରହ ଅନୁଯାୟୀ ବର୍ତ୍ତମାନ ନିମ୍ନମତେ ଭୋଗ ହେଉଥିବା ଜଣାଯାଏ ।

| | |
|---|---|
| ସରପୁଳି ପିଠା | - ୫ ସରା |
| ସୁଆର ପିଠା | - (୩ପଟ) - ୧ ସରା |
| ରୋଷ ପାଇକ ପିଠା | - (୨ ପଟ) - ୧ ସରା |
| ବିରୁବୁହା ପିଠା | - (୨ ପଟ) - ୧ ସରା |
| କଦଳୀ ବଡ଼ା | - ୧୫ଟି |
| ମିଠା ପଖାଳ | - ୧୧ ଓଳି |
| କ୍ଷୀରି | - ୬ ଓଳି |
| କାଞ୍ଜି | - ୩ ଓଳି |

ସ୍ୱତ୍ୱଲିପି ଓ ପରମ୍ପରା ପ୍ରକାରେ ନୀତି ସମ୍ପୃକ୍ତ ସେବକ, ଗଜପତି ମହାରାଜା ଓ ଅନ୍ୟାନ୍ୟ ବ୍ୟକ୍ତି ବିଶେଷଙ୍କୁ ଉପରୋକ୍ତ ମହାପ୍ରସାଦ ଖେଇ ଭାବରେ ଦେଉଳକରଣଙ୍କ ଜରିଆରେ ବିତରଣ କରା ଯାଇଥାଏ ।

# ରାତ୍ର ପହୁଡ଼

ପରିଦୃଶ୍ୟମାନ ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ଶେଷ କରି ଗଙ୍ଗ ବଂଶୀ ରାଜାମାନେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଉତ୍କଳ ରାଷ୍ଟ୍ରରେ ରାଜା ବୋଲି ସ୍ୱୀକାର କରି ନାନାଦି ରୀତି, ନୀତି, ମାନିଯାତ୍ରାଦି ଖଞ୍ଜି ଥିଲେ । ଉତ୍କଳ ସାମ୍ରାଜ୍ୟର ନରପତିଗଣ ଜଗନ୍ନାଥଙ୍କର ରାଉତ ହୋଇଥିବାରୁ ସମଗ୍ର ଓଡ଼ିଶା ପ୍ରଦେଶରେ ଏବଂ ଭାରତର ହିନ୍ଦୁ ଜଗତରେ ସେମାନଙ୍କୁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ କରା ଯାଉଥିଲା ।

ଶ୍ରୀମନ୍ଦିରର ରତ୍ନସିଂହାସନରେ ଅଧିଷ୍ଠିତ ଶ୍ରୀବିଗ୍ରହମାନଙ୍କର ନୀତି, ପରମ୍ପରା ଓ ଯାତ୍ରା ଇତ୍ୟାଦି ସମଗ୍ର ଭାରତବର୍ଷର ଅନ୍ୟାନ ମନ୍ଦିରର ନୀତି ଅପେକ୍ଷା ସ୍ୱତନ୍ତ୍ର ଓ ବିରଳ ଅଟେ । ଦୈନନ୍ଦିନ ଠାକୁରମାନଙ୍କ ପ୍ରାୟ ୨୨ ଗୋଟି ନୀତି ମଧ୍ୟରେ ପହୁଡ଼ ହେଉଛି ସର୍ବଶେଷ ନୀତି । ଏହି ନୀତି ଶେଷ ହେବାପରେ ମନ୍ଦିର ଶୋଧ ହୋଇ ଦୁଆର ବନ୍ଦ ହୋଇଥାଏ । ସମ୍ପୂର୍ଣ୍ଣ ରାଜକୀୟ ପଦ୍ଧତିରେ ଅନୁସୃତ ହେଉଥିବା ଏହି ଶହ ଶହ ବର୍ଷର ପରମ୍ପରା ଏବେ ବି ପ୍ରଚଳିତ ହେଉଅଛି । କିନ୍ତୁ ସମୟର ଚକ୍ରରେ ଏଥିରେ କେତେକ ପରିବର୍ତ୍ତନ ମଧ୍ୟ ଘଟିଯାଇଛି ।

ଶ୍ରୀମନ୍ଦିରରେ ପ୍ରତ୍ୟହ ଅନୁଷ୍ଠିତ ଏହି ପହୁଡ଼ ନୀତିରେ ଖଟଶେଯ ଲାଗି, ପୁଷ୍ପାଞ୍ଜଳି, ପୁଷ୍ପଲାଗି, ପହୁଡ଼, ମୁଦ ଓ ଶୋଧ ଇତ୍ୟାଦି ସମ୍ପାଦିତ ହୋଇଥାଏ । ଏହି ନୀତି ସଂପର୍କରେ ସ୍ୱତ୍ୱଲିପିରେ ଉଲ୍ଲେଖ ହୋଇଛି ଯେ, ପହୁଡ଼ ନୀତି ପାଇଁ ୧୪ଟି ପଇଡ଼, ଡମ୍ବରୁ ଭଣ୍ଡାର (ପଲଙ୍କ ଘର)ରୁ ପଲଙ୍କ ଆସେ, ଫୁଲ, କର୍ପୂର, ବିଡ଼ିଆ, ସିଲ୍, ମାଟି ଇତ୍ୟାଦି ଜିନିଷାଦ୍‌ମାନ ଆବଶ୍ୟକ ପଡ଼ିଥାଏ ଏବଂ ଉକ୍ତ ନୀତିରେ ସଂପୃକ୍ତ ରହୁଥିବା ସେବକମାନେ ହେଲେ (୧) ମୁଦୁଲି (୨) ବଡ଼ ଦୁଆର ପଢ଼ିଆରୀ (୩) ଖଟଶେଯ ପୁଷ୍ପାଳକ (୪) ସୁଆରବଡୁ (୫) ଭଣ୍ଡାର ମେକାପ (୬) ପାଳିଆ ପୁଷ୍ପାଳକ (୭) ଅଖଣ୍ଡ ମେକାପ (୮) ହଡ଼ପ ନାୟକ (୯) ଭିତର ଗାୟଣୀ (୧୦) ବୀଣାକାର (୧୧) ପାଳିଆ ଖୁଣ୍ଟିଆ (୧୨) ପାଳିଆ ପଢ଼ିଆରି (୧୩) ତଳିଚ୍ଛ ମହାପାତ୍ର (୧୪) ଗରାବଡୁ (୧୫) ମୁଦ୍ରା (୧୬) ବାସି ପାଳିଆ ଗରାବଡୁ ।

ପ୍ରତିଦିନ ଶ୍ରୀବିଗ୍ରହମାନଙ୍କ ବଡ଼ ସିଂହାର ଧୂପ ଶେଷ ହେବା ପରେ ସୁଆରବଡୁ ସେବକ ପାଣି ପକାଇ (ଧୋ ପଖାଳ) ଧୋଇବା ପରେ ଖୁଣ୍ଟିଆ ଡାକିଲେ ଖଟଶେଯ ମେକାପ ସେବକ ଗୋଟିଏ ରତ୍ନ ପଲଙ୍କ ବଡ଼ ଠାକୁର (ବଳଭଦ୍ର)ଙ୍କ ସମ୍ମୁଖରେ ସିଂହାସନ ତଳେ ରଖିଥାନ୍ତି । ତତ୍ପରେ ଭଣ୍ଡାର ମେକାପ ଭଣ୍ଡାରରୁ ଶୟନ ଠାକୁରଙ୍କୁ ବାହାର କରନ୍ତି ଓ ପାଳିଆ ପୁଷ୍ପାଳକ ହାତ ଧୋଇ ଉକ୍ତ ଶୟନ ଠାକୁରଙ୍କୁ ନେଇ ରତ୍ନସିଂହାସନ ନିକଟକୁ ଯାଆନ୍ତି । ଏହି ସମୟରେ ମୁଦ୍ରା ସେବକ ଆଗେ ଆଗେ ବଇଠା (ଦୀପ) ଦେଖାଇଥାନ୍ତି । ସେଠାରେ ବଳଭଦ୍ରଙ୍କ ବାଡ଼ (ବଡ଼ ବାଡ଼) ପୁଷ୍ପାଳକ ଶୟନ ଠାକୁରଙ୍କୁ ଚନ୍ଦନଲାଗି କରାଇ ସିଂହାସନରେ ଜଗନ୍ନାଥଙ୍କ ପାଖରେ ବିଜେ କରନ୍ତି ।

ସ୍ୱର୍ଣ୍ଣ ନିର୍ମିତ ଓ ଅଷ୍ଟଭୁଜ ବିଶିଷ୍ଟ ଏହି ଶୟନ ଠାକୁର ବିଗ୍ରହଙ୍କ ଅର୍ଦ୍ଧେକ ପୁରୁଷ ଓ ଅର୍ଦ୍ଧେକ ସ୍ତ୍ରୀ । ବାମପଟ (ସ୍ତ୍ରୀ) ହସ୍ତରେ ଦର୍ପଣ, ପଦ୍ମ, ପୁସ୍ତକ ଓ କଳସ ଏବଂ ଡାହାଣ ପଟ (ପୁରୁଷ) ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ସୁଶୋଭିତ । ପହୁଡ଼ ଶୟନ ଠାକୁରଙ୍କର ସ୍ତ୍ରୀ ଅଙ୍ଗର ହସ୍ତମାନଙ୍କରେ ବିଷ୍ଣୁ-ନାରାୟଣଙ୍କର ସମସ୍ତ ପତ୍ନୀମାନଙ୍କର ବା ଦେବୀ ମହାମାୟାଙ୍କର ଆୟୁଧ ସଂକେତ ସ୍ଥାନ ପାଇଛି । ପହୁଡ଼ ଶୟନ ଠାକୁର ବିଷ୍ଣୁ ଓ ଯୋଗନିଦ୍ରାଙ୍କର ଏକ ସମ୍ମିଳିତ ବିଗ୍ରହ । ଶୟନ ଠାକୁରଙ୍କର ଡମ୍ବରୁ ହେଉଛି ନାଦ ବ୍ରହ୍ମ ତଥା ସୃଷ୍ଟିର ପ୍ରତୀକ ।

ଶୟନ ଠାକୁର ରତ୍ନସିଂହାସନରେ ବିଜେ ହୋଇ ସାରିବା ପରେ ପୁଷ୍ପାଳକ ସେବକ ଗରାବଡୁ ଠାରୁ ପାଣି ନେଇ ହାତ ଧୋଇ ମାଳ ଓ ଚନ୍ଦନ ସଂସ୍କାର କରି ଶ୍ରୀଅଙ୍ଗରେ ଛୁଇଁ ଶୟନ ଠାକୁରଙ୍କୁ ଲାଗି କରାନ୍ତି । ଇତି ମଧ୍ୟରେ ଆଉ ଦୁଇ ଗୋଟି ପଲଙ୍କ ଗୋଟିଏ ଜଗନ୍ନାଥଙ୍କ ସାମନାରେ ଓ ଗୋଟିଏ ସୁଭଦ୍ରା ଦେବୀଙ୍କ ସମ୍ମୁଖରେ ସିଂହାସନ ତଳେ ରଖା ହୁଏ । ଆଉ ଦୁଇ ଜଣ ପାଳିଆ ପୁଷ୍ପାଳକ ଭିତରକୁ ଯାଆନ୍ତି । ପୂର୍ବରୁ ବଡ଼ ଦୁଆର ପଢ଼ିଆରି ଅମଣିଆ ରଖିଥିବା ପଇଡ଼ ମଧ୍ୟରୁ ୪ ଗୋଟି ସିଂହାସନରେ ରଖା ହୁଏ । ପୁଷ୍ପାଳକମାନେ ତିନି ବାଡ଼ରେ ୩ ଗୋଟି ପଇଡ଼ ଓ ସୁଦର୍ଶନଙ୍କ ବାଡ଼ରେ ୧ ଗୋଟି ପଇଡ଼ ସମର୍ପଣ କରନ୍ତି । ହଡ଼ପ ନାୟକ ସେବକ ୬ଟି ବିଡ଼ିଆ (ପାନ) ତାଙ୍କୁ ସେହି ସମୟରେ ବଢ଼ାଇଥାନ୍ତି । ଏତଦ୍‌ବ୍ୟତୀତ ୬ଗୋଟି ପଇଡ଼ ଲକ୍ଷ୍ମୀ, ନୃସିଂହ, ବିମଳା, ବଟମଙ୍ଗଳା, ଭୁବନେଶ୍ୱରୀ ଓ ଦକ୍ଷିଣ ଘରକୁ ପଠା ହୁଏ । ପୁଷ୍ପାଳକମାନେ ସିଂହାସନ ତଳେ ଠିଆ ହୋଇ ୩ ଠାକୁରଙ୍କର କର୍ପୂର ଆଳତି କରନ୍ତି । ଆଳତି ସମୟରେ ଭିତର ଗାଆଣୀ (ଦେବଦାସୀ) କଳାହାଟ ଦୁଆରେ ଶ୍ରୀଜଗନ୍ନାଥଙ୍କ ପାର୍ଶ୍ୱରେ ରହି ଗାନ କରେ । ସ୍ୱତ୍ୱଲିପିରେ ଦେବଦାସୀ ସେବା ସଂପର୍କରେ ଉଲ୍ଲେଖ ହୋଇଥିବା ବିବରଣୀ ଅନୁଯାୟୀ ଶୟନ ଠାକୁର ଭିତରକୁ ବିଜେ କଲେ ଭିତର ଗାଆଣୀ କଳାହାଟ ଦ୍ୱାର ଲଣ୍ଠାବର୍ତ୍ତଠାରେ ଠିଆ ହୋଇ ଗୀତ ଗୋବିନ୍ଦ ଗାଇବେ । ଶୟନ ଠାକୁର ବାହୁଡ଼ା ବିଜେ କରିବା ସମୟରେ ଏହି ସେବିକା ଆଗେ ଆଗେ ଗୀତ ବୋଲିବେ । ପୁନଶ୍ଚ ଶୟନ ଠାକୁର ଭିତରକୁ ଗଲାଯାଏଁ ଜୟ ବିଜୟ ଦ୍ୱାର ଠାରେ ଗୀତ ଗାଇବେ । ସମ୍ପ୍ରତି କିଛି ବର୍ଷ ଧରି ଭିତର ଗାଆଣୀ ଦେବାଦାସୀ କେହି ନଥିବାରୁ ଏହି ସେବା ବନ୍ଦ ହୋଇ ଯାଇଅଛି । ଏତଦ୍‌ବ୍ୟତୀତ ଭିତର ଗାଆଣୀ ଗୀତ ବୋଲିବା ସମୟରେ ବୀଣାକାର ସେବକ ବଡ଼ ଠାକୁର (ବଳଭଦ୍ର)ଙ୍କ ପାର୍ଶ୍ୱରେ ରହି ବୀଣା ବଜାଇଥାନ୍ତି । ସ୍ୱତ୍ୱଲିପିରୁ ଜଣାଯାଏ ଯେ, ପ୍ରତ୍ୟହ ପହୁଡ଼ ସମୟେ ପୁଷ୍ପାଞ୍ଜଳି ଠାକୁର ସହ ଜୟ ବିଜୟ ଦ୍ୱାର ଠାରୁ ଭିତର ପଲଙ୍କ ପର୍ଯ୍ୟନ୍ତ ଦୈନିକ ବୀଣା ବଜାଇବେ । ଉଲ୍ଲେଖଯୋଗ୍ୟ ଯେ, ଶ୍ରୀମନ୍ଦିର ସ୍ୱତ୍ୱଲିପି ପ୍ରସ୍ତୁତ ହେବାର ପାଞ୍ଚ ବର୍ଷ ପୂର୍ବରୁ ଅର୍ଥାତ୍ ୧୯୪୭ ମସିହାରୁ ଏହି ବୀଣାକାର ସେବା ବନ୍ଦ ଅଛି । ସେହି ସମୟରେ ମନ୍ଦିରରେ ବୀଣା ଭାଙ୍ଗି ପଡ଼ିଥିଲା ଓ ଆବଶ୍ୟକୀୟ ମରାମତି ହୋଇ ନଥିଲା । ଏପରିକି

ତତ୍‌କାଳୀନ ସମୟରେ ଠାକୁରମାନଙ୍କ ନୀତିରେ ଚରମ ବିଶୃଙ୍ଖଳା ତଥା ବିଳମ୍ବ ହେତୁ ଅଧିକାଂଶ ଦିନ ଚନ୍ଦନଲାଗି ଓ ପହୁଡ଼ ନୀତି ହେଉ ନଥିଲା । ତେଣୁ ସେହିଦନ ଠାରୁ ଏ ସେବା ବସ୍ତୁତଃ ହୋଇପାରି ନଥିଲା । ''ଶ୍ରୀପୁରୁଷୋତ୍ତମ କର୍ମାଙ୍ଗୀ''ରେ ଏହି ସେବା ସମ୍ପର୍କରେ ବର୍ଣ୍ଣିତ ଅଛି ଯେ, ''ସେବକେ ଏ ନାରଦ ସେବା । ବୀଣା ନେଇ ପରମେଶ୍ୱରଙ୍କ ପହୁଡ଼କାଳେ ସୁଗୀତ କଳସା ଗାଇ ପରମେଶ୍ୱରଙ୍କ କଳାହାଟ ଦ୍ୱାରେ ବୀଣା ବଜାଇବେ ।'' ବୀଣାକର ହେଉଛନ୍ତି ବ୍ରାହ୍ମଣ ସେବକ । ସମ୍ପ୍ରତି ଏହି ସେବକଙ୍କର ବଂଶଧରମାନେ ପୁରୀ ପଥୁରିଆ ସାହି ଓ କୁଣ୍ଡାଇବେଣ୍ଟ ସାହିରେ ଅବସ୍ଥାନ କରୁଛନ୍ତି ।

ରତ୍ନସିଂହାସନରେ ବିରାଜିତ ଠାକୁରମାନଙ୍କ ପହୁଡ଼ ଆଳତି ଶେଷରେ ବଡ଼ଛତା ମଠ ବାବାଜୀ ଗୀତ ବୋଲିଥାନ୍ତି । ପରେ ହଡ଼ପ ନାୟକ ସେବକ ୩ଟି ରୂପା ନିର୍ମିତ ଷଢ଼େଇ (ପାତ୍ର)ରେ ସମୁଦାୟ ପ୍ରାୟ ୪୨ଗୋଟା ଖିଲି ବିଡ଼ିଆ (ପାନ) ପ୍ରତି ପଲଙ୍କ ତଳେ ଗୋଟିଏ ଲେଖାଏଁ ଷଢ଼େଇ ରଖିଥାନ୍ତି । ଏହା ବ୍ୟତୀତ ୪ ଗୋଟି ପଇଡ଼ ୩ ବାଡ଼ର ପଲଙ୍କ ତଳେ ଓ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ୨ ଗୋଟି ଓ ଅନ୍ୟ ୨ ବାଡ଼ରେ ୨ ଗୋଟି ରଖା ହୁଏ । ପାଳିଆ ଖୁଣ୍ଟିଆ ରୂପା ପିଙ୍ଗଣରେ ଶୁକ୍ଳ (ଧଳା ରଙ୍ଗ) ଫୁଲ ନେଇ ଭିତରକୁ ଯାଏ । ଶୟନ ଠାକୁରଙ୍କୁ ପୁଷ୍ପାଳକ ଓ ସଜପାଳିଆ ଗରାବଡୁ ଉଭୟ ହାତରେ ବେତ ଓ ଫୁଲ ଧରିଥାଏ । ଡମ୍ବରୁ ଭଣ୍ଡାର ପାଖରେ ଥାଏ । ପାଳିଆ ଖଟଶେଯ ମେକାପ ଜୟ ବିଜୟ ଦ୍ୱାରରେ ଡମ୍ବରୁ ପକାଏ । ଏହାପରେ ଶୟନ ଠାକୁର ଡମ୍ବରୁ ଉପରେ ବିଜେ ହୁଅନ୍ତି । ତାଙ୍କୁ ଏକ ଗୋଟି ପଇଡ଼ ମଣୋହି ହୁଏ ଓ ୨ଟି ବିଡ଼ିଆ (ପାନ) ଲାଗି ହୁଏ । ତତ୍ପରେ କର୍ପୂର ଆଳତି ଓ ସଞ୍ଜାକାଳି (ପିଠଉ) ଆଳତି ହୁଏ । ପାଳିଆ ଖୁଣ୍ଟିଆ ଠାକୁରଙ୍କ ଉପରକୁ ପୁଷ୍ପାଞ୍ଜଳି ପକାଏ । ଏହି ସମୟରେ ଖୁଣ୍ଟିଆ ମଣିମା ଡାକ ଦେବା ପରେ ଶୟନ ଠାକୁରଙ୍କୁ ଜୟ ବିଜୟ ଦ୍ୱାରରୁ ବିଜେ କରାଇ ନେଇ ମହାପ୍ରଭୁ (ଜଗନ୍ନାଥ)ଙ୍କ ପଲଙ୍କରେ ଶୟନ କରାଇବା ସଙ୍ଗେ ସଙ୍ଗେ ପୁଷ୍ପାଳକ ସେବକ ଚନ୍ଦନ ଓ ମାଳ ମଇଲମ କରନ୍ତି ଓ ଭଣ୍ଡାର ଘରକୁ ବିଜେ କରାଇ ଦେଇ ଚନ୍ଦନ ଓ ମାଳ ଗରାବଡୁ ହାତରେ ଦେଲେ ସେ ବିମଳାଙ୍କ ମନ୍ଦିରକୁ ପଠାଇଥାନ୍ତି । ଏହାପରେ ପ୍ରତିହାରୀ ସେବକ ଜୟ ବିଜୟ ଦ୍ୱାର ଆଉଯାଇ ଦେବା ସଙ୍ଗେ ସଙ୍ଗେ ଭିତର ଦକ୍ଷିଣ ଦ୍ୱାର ବନ୍ଦ ହୁଏ । ଦିଅଁ ଭିତରକୁ ବିଜେ କରିବା ପରେ ଛାମୁ ବଇଠା ଓ ଅନ୍ୟ ଅଖଣ୍ଡ-ବଇଠା ଓହ୍ଲା ହୁଏ । ଏହି ସମୟରେ ପାଳିଆ ମେକାପ ଗମ୍ଭୀରାରେ (ଗର୍ଭ ଗୃହ) ଓ ପ୍ରତିହାରୀ ସେବକ କଳାହାଟ ଦ୍ୱାରରେ ଉପସ୍ଥିତ ରହି ଏକ ସମୟରେ 'ମଣିମା' ଡାକ ଦିଅନ୍ତି । ପ୍ରାୟ ୮ ଥର ବିଭିନ୍ନ ସମ୍ବୋଧନ ଥାଇ ମହାପ୍ରଭୁମାନଙ୍କ ଉଦ୍ଦେଶ୍ୟରେ ଡାକ ଦିଆ ଯାଇଥାଏ । ଏହା ଗୁପ୍ତ ହୋଇଥିବାରୁ ଏଠାରେ ପ୍ରକାଶ କରିବା ସମ୍ଭବପର ନୁହେଁ ।

ସୂଚନାଯୋଗ୍ୟ ଯେ, ଠାକୁରମାନଙ୍କ ପହୁଡ଼ ସମୟରେ ଅନୁସୃତ ହେଉଥିବା ପରମ୍ପରା ଓ ବିଧି ଭାରତର ଅନ୍ୟତ୍ର ହିନ୍ଦୁ ଦେବଦେବୀ ମନ୍ଦିରରେ ଦେଖାଯାଏ ନାହିଁ ।

ପାଳିଆ ମେକାପ ଛାମୁ ବଇଠା ଧରି ଏହି ସମୟରେ ସିଂହାସନ ଚାରିଆଡ଼େ ବୁଲି ଦେଖିଥାନ୍ତି ଓ ପରେ କଳାହାଟ ଦ୍ୱାର ଦେଇ ବାହାରକୁ ଆସନ୍ତି । ମୁଦୁଲି ସେବକ କଳାହାଟ ଦ୍ୱାରଠାରୁ ଜୟ ବିଜୟ ଦ୍ୱାର ପର୍ଯ୍ୟନ୍ତ ଶୋଧ କରି କଳାହାଟ ଦ୍ୱାର ବନ୍ଦ କରେ । ପୂର୍ବରୁ ପ୍ରତିହାରୀ ସେବକ ଉକ୍ତ ଦ୍ୱାରର ଦୁଇ କଡ଼ାରେ ଦଉଡ଼ି ଲଗାଇ ବାନ୍ଧିଥାନ୍ତି । ଏହି ସମୟରେ ମୁଦ୍ରା ସେବକ ମାଟିରେ ମୁଦ୍ରା ଦେଇଥାନ୍ତି ଏବଂ ତଳିଚ୍ଛ ମହାପାତ୍ରଙ୍କ ଠାରୁ ଉଭୟ ସୁନା ସିଲ୍ ଓ ମଦନମୋହନ ମୂର୍ତ୍ତି ଅଙ୍କିତ ରୂପା ସିଲ୍ ନେଇ ମାଟି ଉପରେ ମୁଦ ଦେଇଥାନ୍ତି । ଉଲ୍ଲେଖଯୋଗ୍ୟ ଯେ, ସୁନା ସିଲ୍‌ଟି ଏକ ଗୋଲ ଆକୃତିର । ଏହି ସିଲ୍‌ଟି ମାଟିର ମଝିରେ ଦେବା ପରେ ତତ୍ ଚାରି ପାଖେ ରୂପା ସିଲ୍‌ଟି ଛାପ ଦିଆଯାଏ । ସୁନା ସିଲ୍‌ରେ ପାର୍ଶି ଭାଷାରେ କେତେକ ଅକ୍ଷର ଖୋଦିତ ହୋଇଛି । ଏହି ସିଲ୍‌ଟି ଭଣ୍ଡାର ମେକାପଙ୍କ ଜିମାରେ ଥାଏ । ପ୍ରତ୍ୟହ ପହୁଡ଼ ବେଳେ ମୁଦୁଲି ସେବକ ତଳିଚ୍ଛଙ୍କୁ ଉପରୋକ୍ତ ସିଲ୍‌ଟି ଯୋଗାଇଥାନ୍ତି । ଅପରପକ୍ଷରେ ରୂପା ସିଲ୍‌ଟି ତଳିଚ୍ଛଙ୍କ ପାଖରେ ଥାଏ ।

ସୂଚନାଯୋଗ୍ୟ ଯେ, ପୂର୍ବେ ପହୁଡ଼ ଆଳତି ପରେ ତଳିଚ୍ଛ ମହାପାତ୍ର ଗୁଡ଼ ହାଣ୍ଡି ସିଂହାସନରେ ବସାଇ ଅସର୍ପା ଧରନ୍ତି ଓ ତା'ପର ଦିନ ସକାଳୁ ହାଣ୍ଡିରେ ସରା ଘୋଡ଼ାଇ ମେକାପ ସେବକ ଜିମା ଦେଉଥିଲେ । କିନ୍ତୁ ଗତ କିଛି ବର୍ଷ ଧରି ଏହା ପାଳିତ ହେଉ ନଥିବା ଜଣାଯାଏ ।

ଶ୍ରୀମନ୍ଦିରର କଳାହାଟ ଦ୍ୱାରରେ ତାଲା ପଡ଼ି ସିଲ୍ ହେବା ପରେ ଅନୁରୂପ ମତେ ମୁଦୁଲି ଜୟ ବିଜୟ ଦ୍ୱାର ବନ୍ଦ କରି ତାଲା ପକାଇଥାନ୍ତି । ମୁଦ୍ରା ସେବକ କଳାହାଟ ଦ୍ୱାର ପରି ଏହି ତଳିଚ୍ଛଙ୍କ ଠାରୁ ସିଲ୍ ନେଇ ମାଟି ମୁଦ ଉପରେ ଛାପ ଦେଇଥାନ୍ତି । ଏହାପରେ ମନ୍ଦିର ବରକନ୍ଦାଜ (ପୋଲିସ) ଚାରିଆଡ଼େ ବୁଲି ମନ୍ଦିର ଶୋଧ କରନ୍ତି । (ଅର୍ଥାତ୍ ମନ୍ଦିର ମଧ୍ୟରେ କୌଣସି ଲୋକଙ୍କୁ ରଖାଇ ଦିଅନ୍ତି ନାହିଁ) ଶ୍ରୀମନ୍ଦିର ବାହାର ବେଢ଼ାର ଚାରି ମୁଖ୍ୟ ଦ୍ୱାର (ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ) ବନ୍ଦ ହୁଏ । ପ୍ରତ୍ୟେକ ଦ୍ୱାରରେ ବରକନ୍ଦାଜ ଜଗି ରହି ପହରା ଦେଇଥାନ୍ତି । ଏତଦ୍‌ବ୍ୟତୀତ ଜୟ ବିଜୟ ଦ୍ୱାରଠାରେ ମୁଦୁଲି ସେବକ ଓ ଅନ୍ୟାନ୍ୟ କର୍ତ୍ତବ୍ୟରତ ବରକନ୍ଦାଜମାନେ ଉପସ୍ଥିତ ଥାଆନ୍ତି ।

ଉଲ୍ଲେଖଯୋଗ୍ୟଯେ, ବର୍ଷର କେତେକ ନିର୍ଦ୍ଦିଷ୍ଟ ଦିନରେ ଅନୁଷ୍ଠିତ ସ୍ୱତନ୍ତ୍ର ଯାନିଯାତ୍ରା ତଥା ପର୍ବମାନଙ୍କରେ ସମୟ ଅଭାବରୁ ଠାକୁରମାନଙ୍କ ପହୁଡ଼ ନୀତି ହୋଇ ପାରିନଥାଏ । ଏପରିକି କେତେକ ଦିନ ଠାକୁରମାନଙ୍କ ଗୁପ୍ତ ନୀତି ସମ୍ପାଦନ ପୂର୍ବକ ଦ୍ୱାର ବନ୍ଦ କରା ନଯାଇ ଶ୍ରୀବିଗ୍ରହମାନଙ୍କ ଶ୍ରୀମୁଖରେ ଖଣ୍ଟୁଆ ଲାଗି କରାଯାଇ 'ଠିଆ ପହୁଡ଼' ହୋଇଥାଏ । ଏହି ସମୟରେ ସର୍ବସାଧାରଣଙ୍କୁ ମନ୍ଦିର ଭିତର କାଠ ନିକଟକୁ ଛଡ଼ା ଯାଇନଥାଏ ।



**ପରିଶିଷ୍ଟ - କ**

# ଶ୍ରୀମନ୍ଦିରରେ ଅଷ୍ଟକାଳ ସେବା

ପ୍ରାଚୀନ ପରମ୍ପରା ପ୍ରକାରେ ଶ୍ରୀମନ୍ଦିରରେ ପ୍ରତିଦିନ ତିନି ଧୂପ ପାଞ୍ଚ ଅବକାଶ, ଏହିପରି ଆଠଗୋଟି ଭୋଗର ବ୍ୟବସ୍ଥା ରହିଥିଲା । ଏହି ପୂଜାର ଆରମ୍ଭ କେବେ ହେଲା, ତାହା ନିର୍ଦ୍ଦିଷ୍ଟ ଭାବରେ କହି ହେଉ ନାହିଁ । ଗବେଷକମାନଙ୍କ ମତାନୁଯାୟୀ ବଲ୍ଲଭାଚାରୀ ସମ୍ପ୍ରଦାୟ ଶ୍ରୀକୃଷ୍ଣଙ୍କର ଅଷ୍ଟକାଳ ସେବା ସହିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅଷ୍ଟକାଳ ସେବାରେ କେତେକ ମେଳ ରହିଅଛି । ବଲ୍ଲଭାଚାରୀ ବା ଶୁଦ୍ଧ ଦ୍ୱୈତବାଦୀ ବୈଷ୍ଣବ ସମ୍ପ୍ରଦାୟ ବାଳଗୋପାଳ ସେବାର ପ୍ରାଧାନ୍ୟ ପ୍ରତିପାଦିତ କରିଅଛନ୍ତି ।

(୧) ମଙ୍ଗଳ ଆରତି - ସୂର୍ଯ୍ୟୋଦୟ ଅଧଘଣ୍ଟା ପରେ ଶ୍ରୀବିଗ୍ରହଙ୍କୁ ଶଯ୍ୟାରୁ ଉଠାଇ ଆସନରେ ବସାଇ ଫଳାହାର ଅର୍ପଣ, ଦୀପଦାନ ।

(୨) ଚାରି ଦଣ୍ଡ ବେଳରେ ତୈଳ, ଚନ୍ଦନ, କର୍ପୂର ଓ ବସ୍ତ୍ର, ଅଳଙ୍କାର ଦ୍ୱାରା ବିଗ୍ରହଙ୍କୁ ଭୂଷିତକରଣ ।

(୩) ଛଅ ଦଣ୍ଡ ବେଳରେ ଶ୍ରୀକୃଷ୍ଣଙ୍କ ଗୋଚାରଣ ବେଶ ।

(୪) ମଧ୍ୟାହ୍ନ ଭୋଗରେ - ଭୋଗ ପରେ ନିଦ୍ରା ।

(୫) ବେଳ ଛଅ ଦଣ୍ଡ ଥିବ ଉତ୍‌ଥାପନ ।

(୬) ଉତ୍‌ଥାପନର ଅଧଘଣ୍ଟା ପରେ ଦ୍ୱିପ୍ରହର ଭୋଗ ।

(୭) ସନ୍ଧ୍ୟା ସମୟରେ ଦିନର ବେଶଭୂଷା ଉଲାଗି ହୋଇ ପୁନର୍ବାର ତୈଳ, ଚନ୍ଦନ, ବସ୍ତ୍ର, ଗନ୍ଧ, ଦ୍ରବ୍ୟ ଦ୍ୱାରା ସେବା ।

(୮) ଛଅ ଦଣ୍ଡ ରାତିରେ ଶୟନ । ନୂତନ ବେଶଭୂଷା, ପିଠାପଣା ଭୋଗ ।

ସମ୍ପ୍ରତି ଏ ପ୍ରକାରର ପୂଜା ଓ ଭୋଗ ଇତ୍ୟାଦିରେ କେତେକ ପରିବର୍ତ୍ତନ ଘଟିଅଛି ।



ପରିଶିଷ୍ଟ - ଖ

## ଶ୍ରୀମନ୍ଦିରରେ ନିୟୋଜିତ
# ଦୈନନ୍ଦିନ ସେବକଙ୍କ ସଂପର୍କରେ

ଶ୍ରୀଜଗନ୍ନାଥ ମନ୍ଦିରର ସେବା ପୂଜା ତଥା ନୀତି ସହିତ ସଂପୃକ୍ତ ସେବକମାନଙ୍କର ତାଲିକା ଓ ସେବା ବିବରଣୀ ୧୯୫୨ ରୁ ୧୯୫୪ ମସିହା ମଧ୍ୟରେ ପ୍ରସ୍ତୁତ ''ସ୍ୱତ୍ୱଲିପି''ରେ ଲିପିବଦ୍ଧ ହୋଇଛି । ସ୍ୱତ୍ୱଲିପି ବର୍ଣ୍ଣିତ ପ୍ରକାରେ ମୋଟ ୧୧୯ ପ୍ରକାର ସେବା ଓ ସେବକ ଶ୍ରେଣୀ ରହିଅଛି । ୧୯୮୮ ମସିହାରେ ଏଥିରେ 'ବେହେରା କରଣ' ସେବାକୁ ଅନ୍ତର୍ଭୁକ୍ତ କରାଯାଇ ପୁନଃ ପ୍ରଚଳନ କରା ଯାଇଅଛି । ୧୨୦ ପ୍ରକାର ସେବା ଓ ସେବକ ଶ୍ରେଣୀ ମଧ୍ୟରୁ ଗତ ଅନେକ ବର୍ଷ ଧରି ଏପରିକି ରାଜ୍ୟ ସରକାର ଶ୍ରୀମନ୍ଦିରର ପରିଚାଳନା ଭାର ନେବାର ବହୁ ପୂର୍ବରୁ କେତେକ ସେବା ଓ ସେବକ ଶ୍ରେଣୀ ଲୋପ ପାଇଯାଇଛି । ସ୍ୱତ୍ୱଲିପିରେ ଆବଶ୍ୟକୀୟ ସଂଶୋଧନ କରାଯାଇ ନଥିବାରୁ ବର୍ତ୍ତମାନ ମଧ୍ୟ ପାଠକ ତଥା ଗବେଷକମାନେ ଶ୍ରୀମନ୍ଦିର ସେବା ଓ ସେବକଙ୍କ ସମ୍ବନ୍ଧରେ ପ୍ରକୃତ ତଥ୍ୟ ନ ପାଇ ସମୟେ ସମୟେ ଭ୍ରମରେ ପଡୁଛନ୍ତି । ସ୍ୱତ୍ୱଲିପିରେ ବର୍ଣ୍ଣିତ ସେବକମାନଙ୍କ ମଧ୍ୟରେ, (୧) ଗଜପତି ମହାରାଜା, (୨) ପରିଛା ବା ରାଜଗୁରୁ, (୩) ଛତିଶା ନିଯୋଗ ନାୟକ ପଟ୍ଟଯୋଗୀ ମହାପାତ୍ର, (୪) ଭିତରଛ, (୫) ତଳୁଛ, (୬) ମୁଦିରସ୍ତ ବା ମୁଦିହସ୍ତ, (୭) ଦେଉଳ ପୁରୋହିତ, (୮) ପୂଜାପଣ୍ଡା, (୯) ବଡ଼ ପଣ୍ଡା, (୧୦) ପୁଷ୍ପାଳକ, (୧୧) ମହାଜନ, (୧୨) ମୁଦ୍ରା, (୧୩) ଖୁଣ୍ଟିଆ, (୧୪) ଭଣ୍ଡାର ମେକାପ, (୧୫) ପାଳିଆ ମେକାପ, (୧୬) ଅଖଣ୍ଡ ମେକାପ, (୧୭) ଚାଙ୍ଗଡ଼ା ମେକାପ, (୧୮) ଖଟ ଶେଯ ମେକାପ, (୧୯) ପ୍ରତିହାରୀ, (୨୦) ଦଇତା, (୨୧) ପତି ମହାପାତ୍ର, (୨୨) ପତ୍ରିବଡୁ, (୨୩) ଗରାବଡୁ, (୨୪) ସୁଆରବଡୁ, (୨୫) ଖୁରୀ ନାୟକ, (୨୬) ମୁଖ ପଖାଳ, (୨୭) ଘଟୁଆରୀ, (୨୮) ଗୋଚ୍ଛିକାର, (୨୯) ସୁନା ଗୋସ୍ୱାମୀ, (୩୦) ମୁଦୁଲି, (୩୧) ଆଳତି ବଳିତା ସେବକ, (୩୨) ପୁରାଣ ପଣ୍ଡା, (୩୩) ଦତ୍ତ ମହାପାତ୍ର, (୩୪) ଲୁଗାଧୁଆ ଓ ପାଣିକୁଣ୍ଡ ସେବକ, (୩୫) ବଲ୍ଲଭ ଯୋଗାଣିଆ, (୩୬) ବିମାନବଡୁ, (୩୭) ଅଣସର ସୁଦ୍ଧ ସୁଆର ଓ ସୁଦ୍ଧ ସୁଆର, (୩୮) ହଡ଼ପ ନାଏକ, (୩୯) ବିଡ଼ିଆ ଯୋଗାଣିଆ, (୪୦) ଖଟୁଳି ସେବକ, (୪୧) ଆସ୍ଥାନ ପ୍ରତିହାରୀ, (୪୨) କୋଠ ଭୋଗ ଯୋଗାଣିଆ, (୪୩) ପ୍ରଧାନୀ, (୪୪) ପାଇକ, (୪୫) ଲେଙ୍କା, (୪୬) ସୁଆର ନିଯୋଗ ନାଏକ, (୪୭) ସୁଆର ନିଯୋଗ ଓ ମହାସୁଆର, (୪୮) ଜଗିଆ ମହାସୁଆର, (୪୯) ବଡୁ ସୁଆର, ଥାଳି, ତୁଣ ଏବଂ ଅମାଲୁ ସୁଆର, (୫୦) ପନ୍ତିବଡୁ, (୫୧) ଅମାଲୁ ତୋଳା, ପୁର ଖରଡ଼ା, (୫୨) ତୋଳାବଡୁ, (୫୩) ରୋଷ ପାଇକ, (୫୪) ବାହାର ଦେଉଳି

ସୁଆର, (୫୫) ବାହାର ଦେଉଳି ଯୋଗାଣିଆ, (୫୬) ରୋଷ ଧୋ ପଖାଳିଆ, ଅଙ୍ଗାରୁଆ, ଗୋବର ପାଣିଆ ଏବଂ ରବାଡ଼ିଆ, (୫୭) ହାଣ୍ଡି ଯୋଗାଣିଆ, (୫୮) ବିରିମୁଣ୍ଡା ସାମର୍ଥା, (୫୯) କୋଠ ଭୋଗ ପାଣିଆ, (୬୦) ପନିକି ପଟା, (୬୧) ନିକାପ ଏବଂ ଗନ୍ଧଣା ନିକାପ, (୬୨) ବିରୁବୁହା, (୬୩) ଦଉଡ଼ି ବୋଳା, (୬୪) ଚୁନରା, (୬୫) ସାବତ ନିଯୋଗ, (୬୬) ପାଣିଆପଟ, (୬୭) ମଣ୍ଡଣି, (୬୮) ଚକା ଅପସର, (୬୯) ମୁଳିଆ ସୁଆଁସିଆ, (୭୦) ବୀଣାକାର, (୭୧) ଦର୍ପଣିଆ, (୭୨) କୋଠ ସୁଆଁସିଆ, (୭୩) ମହାଭୋଇ, (୭୪) ଗୀତ ଗୋବିନ୍ଦ, (୭୫) ଭିତର ଗାଆଣୀ, (୭୬) ସଂପ୍ରଦା ନିଯୋଗ, (୭୭) ଦୟଣା ମାଳି, (୭୮) ମାଦେଳି, (୭୯) ପ୍ରସାଦବଡୁ, (୮୦) ତାଟୁଆ, (୮୧) ପତ୍ରବନ୍ଧା, (୮୨) ବଜନ୍ତ୍ରୀ, (୮୩) ଛତାର ନିଯୋଗ, (୮୪) କାହାଳିଆ, (୮୫) ଶଙ୍ଖୁଆ, (୮୬) ପର୍ବ ଯାତ୍ରା ଯୋଗାଣିଆ, (୮୭) ଚିତ୍ରକାର, (୮୮) ରୂପକାର, (୮୯) ବଣିଆ, (୯୦) ତାମରା ବିଶୋଇ, (୯୧) କରତିଆ, (୯୨) ବେଣ୍ଟ ବିନ୍ଧା ପାଇକ, (୯୩) ପାଟରା ବିଶୋଇ, (୯୪) କଳାବେଠିଆ, (୯୫) ଦରଜୀ, (୯୬) କୁମ୍ଭାର ବିଶୋଇ, (୯୭) ରଥ ଭୋଇ, (୯୮) ମାଳଚୂଳ, (୯୯) ବାଣୁଆ, (୧୦୦) ଚକ୍ର ଦିହୁଡ଼ି, (୧୦୧) ଓଝା ମହାରଣା, (୧୦୨) ଘଣ୍ଟ ସେବା, (୧୦୩) ଘଣ୍ଟୁଆ, (୧୦୪) ରଥ ଡାହୁକ, (୧୦୫) ବଢ଼େଇ, (୧୦୬) ବୈଦ୍ୟ, (୧୦୭) ଅମୁଣିଆ ଛତାର, (୧୦୮) ଛାମୁ ଦିହୁଡ଼ି, (୧୦୯) ଚାପ ବେହେରା, (୧୧୦) ଚାପ ଦଳେଇ, (୧୧୧) ମାପ ସାଇତା କରଣ, (୧୧୨) ତଢ଼ଉ କରଣ, (୧୧୩) ଦେଉଳ କରଣ, (୧୧୪) ବୈଠି କରଣ, (୧୧୫) କୋଠ କରଣ, (୧୧୬) ଚର୍ଚ୍ଚା କରଣ, (୧୧୭) ଦୟଣା ପତ୍ରି, (୧୧୮) ଚାଉଳ ବଛା କରଣ, (୧୧୯) ମଠ ଓ ବ୍ୟକ୍ତିଗତ ସେବା, ଓ (୧୨୦) ବେହେରା କରଣ ।

ଉପରିଲିଖିତ ସେବା ମଧ୍ୟରୁ କୋଠକରଣ, ଚର୍ଚ୍ଚାକରଣ, ମାପ ସାଇତା କରଣ, ସଂପ୍ରଦା ନିଯୋଗ, ମାଦେଳି, ଭିତର ଗାଆଣୀ, ବୀଣାକାର, ରାଜଗୁରୁ (ପଟୁଆର ସେବା), ବାଣୁଆ, କଳା ବେଠିଆ, ପ୍ରସାଦବଡୁ, ପତ୍ରବନ୍ଧା, ଶଙ୍ଖୁଆ, ମୁଳିଆ ସୁଆଁସିଆ, ବଡ଼ପଣ୍ଡା, କୁମ୍ଭାର ବିଶୋଇ, ମାଳଚୂଳ ଇତ୍ୟାଦି କେତେକ ସେବା ହେଉନଥିବା ଜଣାଯାଏ ।

ଦୈନନ୍ଦିନ ନୀତି ବ୍ୟତୀତ ବିଭିନ୍ନ ପର୍ବପର୍ବାଣୀ, ଯାନିଯାତ୍ରା ମାନଙ୍କରେ ଅନ୍ୟ କେତେକ ବିଶିଷ୍ଟ ସେବକଙ୍କର ଆବଶ୍ୟକତା ପଡ଼ିଥାଏ । ଯଥା ଗଜପତି ମହାରାଜା ସେବା, ମୁଦିରସ୍ତ, ସୁନା ଗୋସ୍ୱାମୀ, ଦଇତା, ଅଣସର ସୁଦ୍ଧ ସୁଆର, ପାଟରା ବିଶୋଇ, ମହାରଣା, ଭୋଇ, କୋଠ ସୁଆଁସିଆ, ରୂପକାର, ଚିତ୍ରକାର, କମାର, ତାମରା, ବିଶୋଇ, କରତିଆ, ଓଝା ମହରଣା, ଚାପ ଦଳେଇ, ଦରଜୀ ଇତ୍ୟାଦି ଅନ୍ୟତମ ।

ଶ୍ରୀମନ୍ଦିର ଗାରଦ କାର୍ଯ୍ୟାଳୟରେ ପ୍ରତ୍ୟହ ଶ୍ରୀଜଗନ୍ନାଥ ମନ୍ଦିର ଦୈନନ୍ଦିନ ପଞ୍ଜିକା (ନୀତି ବିବରଣ)ରୁ ସଂଗୃହୀତ ହୋଇଥିବା ତଥ୍ୟ ଅନୁଯାୟୀ ଦୈନନ୍ଦିନ ସାଧାରଣ ନୀତିମାନଙ୍କରେ ପ୍ରାୟ ୮୫ ଜଣ ସେବକଙ୍କର ଆବଶ୍ୟକ ପଡ଼ିଥାଏ । ନିମ୍ନଲିଖିତ ସଂପୃକ୍ତ ସେବକଙ୍କର କେବଳ ଦୈନନ୍ଦିନ ସେବା ଓ ତାଙ୍କ କାର୍ଯ୍ୟ ସଂପର୍କରେ ସଂକ୍ଷେପରେ ସୂଚନା ପ୍ରଦାନ କରାଗଲା ।

(୧) **ଭିତରଛ** : ଶ୍ରୀମନ୍ଦିରର ପ୍ରଥମ ଦ୍ୱାରଫିଟି ନୀତି କରିବା ନିମନ୍ତେ ମନ୍ଦିରକୁ ଯିବା ପରେ ବନ୍ଦ ହୋଇଥିବା ଦ୍ୱାରର ମୁଦ ପରୀକ୍ଷା କରି ଦ୍ୱାର ଫିଟାଇବା ଆଦେଶ ଦେଇଥାନ୍ତି । ମହାପ୍ରଭୁଙ୍କ ବାଡ଼ରେ ମଙ୍ଗଳ ଆଳତି କରିଥାନ୍ତି ଓ ଅମୋଣିଆ ପରିଛା ରୂପେ ଭୋଗର ପବିତ୍ରତା ସଂପର୍କରେ ତଦାରଖ କରନ୍ତି । ଭିତରଛ ମହାପାତ୍ର ହେଉଛନ୍ତି ଏକାଏକ ସେବକ । ସେ ମଧ୍ୟ ପୁଷ୍ପାଳକ ଗୋଷ୍ଠୀର ସେବକ ଅଟନ୍ତି ।

(୨) **ତଳିଛ** : ଉକ୍ତ ସେବକ ପ୍ରତ୍ୟହ ସନ୍ଧ୍ୟା ଆଳତି ସମୟରେ ମହାପ୍ରଭୁଙ୍କ ବାଡ଼ରେ ଆଳତି କରନ୍ତି । ରାତ୍ର ପହୁଡ଼ ପରେ କଳାହାଟ ଓ ଜୟ ବିଜୟ ଦ୍ୱାର ବନ୍ଦ ହୋଇ ମୁଦ୍ରା ମାଟି ଲଗାଇବା ପରେ ତଳିଛ ଛାପା (seal) ଦିଅନ୍ତି ଓ ଭିତର ଠିକ୍ ଭାବରେ ଶୋଧ ହେବା ତନଖି କରନ୍ତି । ଭୋଗ ସମୟରେ ଅଣସର ପିଣ୍ଡିରେ ଉପଚାର ଚାମର ସେବା କରନ୍ତି । ଏହି ସେବକ ପୁଷ୍ପାଳକ ଗୋଷ୍ଠୀର ଅଟନ୍ତି ।

(୩) *ପୂଜାପଣ୍ଡା* : ଏହି ସେବକମାନେ ପ୍ରତିଦିନ ରୋଷ ହୋମ, ସୂର୍ଯ୍ୟ ପୂଜା, ଦ୍ୱାରପାଳ ପୂଜା, ଅଣସର ପିଣ୍ଡିରେ ଗୋପାଳବଲ୍ଲଭ ଭୋଗ, ପ୍ରତ୍ୟେକ ଧୂପ (ରାଜ ଭୋଗ), ଭୋଗ ମଣ୍ଡପ ପୂଜା, ପ୍ରତି ଧୂପରେ ମୁରୁଜ ପକାନ୍ତି । ଭୋଗ ସାରି ଆଳତି କରନ୍ତି ଓ ଅଧିକା ଜୟ ମଙ୍ଗଳ ଆଳତି କରନ୍ତି । ଏତଦ୍‌ବ୍ୟତୀତ ଜଗମୋହନ ଠାରେ ଯଜମାନି ଭୋଗ ସର୍ପା ମଣୋହି କରନ୍ତି । ଏପରିକି ଉପଚାର ଅଳଙ୍କାର ଲାଗି କରନ୍ତି ଓ ଏମାନେ ଠାକୁରଙ୍କ ସମସ୍ତ ଭୋଗ ନୈବେଦ୍ୟ କରନ୍ତି । ପ୍ରତ୍ୟହ ମୋଟ୍ ୪ ଜଣ ପୂଜାପଣ୍ଡା ସେବକଙ୍କର ଦୈନନ୍ଦିନ ନୀତି ପାଇଁ ଆବଶ୍ୟକ ପଡ଼ିଥାଏ । ସୂଚନାଯୋଗ୍ୟ ଯେ, ରୋଷ ହୋମ, ଦ୍ୱାରପାଳ ଓ ପୂଜା ହୋମ ପାଳିଆ ପୂଜାପଣ୍ଡା କରିଥାନ୍ତି ।

(୪) *ପୁଷ୍ପାଳକ* : ପ୍ରତିଦିନ ତିନି ଜଣ ପୁଷ୍ପାଳକ ସେବକ ମଙ୍ଗଳ ଆଳତି, ଅବକାଶ, ଦ୍ୱାରଫିଟା ନୀତି ଠାରୁ ପହୁଡ଼ ପର୍ଯ୍ୟନ୍ତ ଶ୍ରୀଅଙ୍ଗ ସେବା ଯଥା ମଇଲମ, ବେଶ ଇତ୍ୟାଦି କରିଥାନ୍ତି । ଏତଦ୍‌ବ୍ୟତୀତ ସନ୍ଧ୍ୟା ଆଳତି ଓ ପହୁଡ଼ ଆଳତି ଏହି ସେବକମାନଙ୍କ ଦ୍ୱାରା କରାଯାଇଥାଏ ।

(୫) *ସୁଧ ସୁଆର* : ଏ ସେବକ ପ୍ରତିଦିନ ଗୋପାଳବଲ୍ଲଭ ନୀତି ପୂର୍ବରୁ ବଲ୍ଲଭ ପିଣ୍ଡି (ଅଣସର ପିଣ୍ଡି)କୁ ପାଣିରେ ଧୋଇ ପରିଷ୍କାର କରିଥାନ୍ତି ଓ ବଲ୍ଲଭ ବାଢ଼ିଥାନ୍ତି ।

(୬) *ବଡ଼ଦ୍ୱାର ପ୍ରତିହାରୀ* : ମଙ୍ଗଳ ଆଳତି ଠାରୁ ଅବକାଶ ଏବଂ ସନ୍ଧ୍ୟା ଆଳତି ଠାରୁ ପହୁଡ଼ ପର୍ଯ୍ୟନ୍ତ ଧୁକୁଡ଼ି ଦ୍ୱାର ଜଗିବା, ଭୋଗ ଡାକିଯିବା, ପହୁଡ଼ କରିବା, ଦ୍ୱାର ଫିଟା ଇତ୍ୟାଦି ନୀତିରେ ଉପସ୍ଥିତ ହୋଇ କାର୍ଯ୍ୟ କରିଥାନ୍ତି ।

(୭) *ଦକ୍ଷିଣ ପ୍ରତିହାରୀ* : ଦକ୍ଷିଣି (ବେହେରଣ) ଦ୍ୱାର ଜଗିଥାନ୍ତି । ସକାଳ ଧୂପ ଛେକ ଆସିବା ପାଇଁ ରୋଷକୁ ଡାକିବାକୁ ଯାଇଥାନ୍ତି । ବଲ୍ଲଭ ଠାରୁ ସକାଳ ଧୂପ ଶେଷ ପର୍ଯ୍ୟନ୍ତ ଉପସ୍ଥିତି ରହି ଟେରା ବାନ୍ଧିବେ ।

(୮) *ଧୁକୁଡ଼ି ପ୍ରତିହାରୀ* : ସକାଳ ଧୂପ ଭୋଗ ଟେରା ପକାଇବା ଠାରୁ ଦ୍ୱିପ୍ରହର ଶେଷ ପର୍ଯ୍ୟନ୍ତ ଭିତରକାଠ ନିକଟସ୍ଥ ଧୁକୁଡ଼ି ଦ୍ୱାର ଜଗନ୍ତି । ଦ୍ୱିପ୍ରହର ଧୂପ ଛେକ ଆସିବା ପାଇଁ ରୋଷକୁ ଡାକିବାକୁ ଯାଇଥାନ୍ତି ଏବଂ ଏହି ଧୂପ ସମୟରେ ଟେରା ବାନ୍ଧିବେ ଓ ପକାଇବେ ।

(୯) *ଗରୁଡ଼ ପ୍ରତିହାରୀ* : ଜନୈକ ପ୍ରତିହାରୀ ସେବକ ପ୍ରତ୍ୟହ ଭୋଗମଣ୍ଡପ ପୂଜା ସମୟରେ ଭୋଗମଣ୍ଡପ ଗୃହର ଗରୁଡ଼ ସ୍ତମ୍ଭ ସାମନା ଦ୍ୱାରରେ ଜଗି ରହିଥାନ୍ତି । ଏହାକୁ 'ଗରୁଡ଼ ପ୍ରତିହାରୀ' କୁହାଯାଏ ।

(୧୦) *ସେରିକିଆ ପ୍ରତିହାରୀ* : ଭୋଗମଣ୍ଡପ ଉଠିବା (ଆରମ୍ଭ) ଠାରୁ ଭୋଗ ଶେଷ ପର୍ଯ୍ୟନ୍ତ ଉକ୍ତ ପ୍ରତିହାରୀ ଭୋଗମଣ୍ଡପ ଘରର ଭୋଗବୁହା ଦ୍ୱାର ଜଗିଥାନ୍ତି ଏବଂ ଟେରା ପକାଇଥାନ୍ତି । ଏହି ସେବକଙ୍କୁ 'ସେରିକିଆ ପ୍ରତିହାରୀ' କୁହାଯାଏ ।

(୧୧) *ଦ୍ୱାରଘର ପ୍ରତିହାରୀ* : ପ୍ରତିଦିନ ସାହାଣମେଲା ସମୟରେ ୫ ଜଣ ପ୍ରତିହାରୀ ସେବକ କଳାହାଟ ଦ୍ୱାର ଠାରେ ବେତ ଧରି ଯାତ୍ରୀମାନଙ୍କୁ ଶୃଙ୍ଖଳିତ ଭାବେ ଦର୍ଶନ ତଥା ନିୟନ୍ତ୍ରଣ କରିବା ଦାୟିତ୍ୱରେ ରହିଥାନ୍ତି । ଏହି ସେବକମାନଙ୍କୁ 'ଦ୍ୱାରଘର ପ୍ରତିହାରୀ' କୁହାଯାଏ ।

(୧୨) *ଆସ୍ଥାନ ପ୍ରତିହାରୀ* : ଦୈନିକ ମଧ୍ୟାହ୍ନ ଧୂପ ପରେ ଦକ୍ଷିଣି ଘରେ ପାଣି ପକାଇ ପୂଜା କରି ଭୋଗ ଡାକିଯିବା ଏବଂ ସେଠାରେ ଟେରା ପକାଇବା କାର୍ଯ୍ୟ କରିଥାନ୍ତି । ଦକ୍ଷିଣି ଘର ନୀତି ସହ ସଂପୃକ୍ତ ଥିବାରୁ ଏହି ସେବକଙ୍କୁ 'ଆସ୍ଥାନ ପ୍ରତିହାରୀ' କୁହାଯାଏ ।

(୧୩) *ପାଣିଆପଟ* : ଏ ଶୁଦ୍ର ସେବକ ଅଟନ୍ତି । ପ୍ରତ୍ୟହ ଅବକାଶ ନିମନ୍ତେ ପାଣି ଯୋଗାଇବା, ଅବକାଶ ନୀତିରେ ବ୍ୟବହୃତ ପରଖ, ଦର୍ପଣ, ରୂପା ସଜ ଇତ୍ୟାଦି ଧୋଇଥାନ୍ତି । ଗୋପାଳବଲ୍ଲଭ ଠାରୁ ପହୁଡ଼ ନୀତି ପାଇଁ ଯେତେ ଜଳ ଆବଶ୍ୟକ ତାହା ବିମଳା ମନ୍ଦିର ସମ୍ମୁଖସ୍ଥ କୂପରୁ ଆଣି କଂସ ପାହାରି (ଭିତର କାଠ) ନିକଟରେ ଥିବା ପଥରେ କୁଣ୍ଡରେ ରଖିଥାନ୍ତି । ସବୁ ଭୋଗ ପାଇଁ ଆବଶ୍ୟକ ପଡୁଥିବା ଥାଳି, ପରଖ, ଗଡୁ ଇତ୍ୟାଦି ପାଣିରେ ଧୋଇ ସଫା କରି ଯୋଗାଇଥାନ୍ତି ।

(୧୪) *ମନ୍ଦିର ପୁରୋହିତ* : ବ୍ରାହ୍ମଣ ସେବକ ଅଟନ୍ତି । ପ୍ରତ୍ୟହ ନିତ୍ୟ ସ୍ୱସ୍ତୟନ, ଶ୍ରୀସୂକ୍ତ ଓ ପୁରୁଷ ସୂକ୍ତ ପାଠ ଓ ମନ୍ତ୍ରଯାଗ ଅର୍ଥାତ୍ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରାଙ୍କର ୧୦୮ ଥର ଲେଖାଏଁ ମୂଳମନ୍ତ୍ର ଜପ କରିଥାନ୍ତି ।

(୧୫) *ଦକ୍ଷିଣି ଘର ପୁଷ୍ପାଳକ (ମହାଜନ)* : ଶ୍ରୀମନ୍ଦିରର ଦକ୍ଷିଣି ଘରେ ବିରାଜିତ ଚଳନ୍ତି ପ୍ରତିମାମାନଙ୍କର ଦୈନିକ ଅବକାଶ, ବେଶ ଓ ଭୋଗ ଇତ୍ୟାଦି କାର୍ଯ୍ୟ ଏହି ସେବକଙ୍କ ଦ୍ୱାରା ହୋଇଥାଏ ।

(୧୬) *ବାସି ଗରାବଡୁ* : ପୂର୍ବ ଦିନ ପାଳି ଖଟିଥିବା ଗରାବଡୁ ସେବକର ତତ୍‌ପର ଦିନ ଏକ ନିର୍ଦ୍ଦିଷ୍ଟ ସମୟର ସେବାକୁ 'ବାସି ଗରାବଡୁ' ସେବା କୁହାଯାଏ । ଏହି ସେବକ ଠାକୁରଙ୍କ ପହୁଡ଼ ନୀତିରେ ଶୟନ ଠାକୁରଙ୍କ ବିଜେ ସମୟରେ ଅନୁଷ୍ଠିତ ଆଳତି, ବିଡ଼ିଆ ମଣୋହି, ପୁଷ୍ପାଞ୍ଜଳି ଇତ୍ୟାଦି ନୀତିରେ ପାଳିଆ ପୁଷ୍ପାଳକ ସେବକଙ୍କୁ ହାତୁଆଣି ଦେଇଥାନ୍ତି ।

(୧୭) *ଅଖଣ୍ଡ (ମେକାପ)* : ଏହି ସେବକ ମେକାପ ସେବା ଗୋଷ୍ଠୀର ଅଟନ୍ତି । ପ୍ରତ୍ୟହ ଦ୍ୱାର ଫିଟା ଓ ମଙ୍ଗଳ ଆଳତି ସମୟରେ ରତ୍ନସିଂହାସନ ନିକଟରେ ବଇଠା (ପ୍ରଦୀପ ପ୍ରଜ୍ୱଳନ) ବସାଇଥାନ୍ତି । ଏତଦ୍‌ବ୍ୟତୀତ ବଲ୍ଲଭ ସମୟରେ ଅଣସର ପିଣ୍ଡିରେ ରୁଖାରେ ଗୋଟିଏ ବଇଠା ଜାଳିବେ । ସନ୍ଧ୍ୟା ସମୟରେ ଧୁକୁଡ଼ି ଦ୍ୱାର ଉପରେ, ଭଣ୍ଡାର ଦ୍ୱାର ଆଗରେ ଖୁଣ୍ଟିଆବଟା ଉପରେ (ଯେଉଁଠି ମାଳ ଫୁଲ ରହେ) ବଇଠାମାନ ବସାଇବେ ଓ ରାତ୍ର ପହୁଡ଼ ଯାଏ ତାହା ଜାଳି ରଖିବେ ।

(୧୮) *ପତ୍ରିବଡୁ* : ଏହି ସେବକ ଠାକୁରଙ୍କ ପ୍ରତ୍ୟହ ରୂପା ସଜ ଉପକରଣ ଯୋଗାଇଥାନ୍ତି । ଉପରୋକ୍ତ ପୂଜା ଉପକରଣ ମୁଦୁଲି ଠାରୁ ଆଣି ପୂଜାପଣ୍ଡାଙ୍କୁ ଦେଇଥାନ୍ତି ଓ ପୂଜା ଶେଷ ପରେ ପୁନଶ୍ଚ ମୁଦୁଲିଙ୍କୁ ଫେରସ୍ତ କରିଥାନ୍ତି ।

(୧୯) *ସୁଆରବଡୁ* : ମହାପ୍ରଭୁଙ୍କ ଦୈନିକ ଯେତେଥର ଭୋଗ ହୁଏ, ଏହି ସେବକ ଭିତର ପୋଖରିଆ ଠାରୁ ଭିତର କାଠ ଅର୍ଗଳି ପର୍ଯ୍ୟନ୍ତ ଅମୋଣିଆ ପାଣି ପକାଇ ଉକ୍ତ ସ୍ଥାନ (ଧୋ ପଖାଳ) ପରିଷ୍କାର କରିଥାନ୍ତି । ସମସ୍ତ ଧୂପ ନୈବେଦ୍ୟ ତଥା ଦ୍ୱାରପାଳ ପୂଜା, ସୂର୍ଯ୍ୟ ପୂଜା ପାଇଁ ରୋଷରୁ ବୈଷ୍ଣବାଗ୍ନି ଆଣି ପୂଜାପଣ୍ଡାଙ୍କୁ ବଢ଼ାଇଥାନ୍ତି । ବେଶ ଓ ମଇଲମ ସମୟରେ ପୁଷ୍ପାଳକ ସେବକଙ୍କୁ କାଠଘୋଡ଼ା ଯୋଗାଇଥାନ୍ତି । ପୂଜା ସମୟରେ ପିଢ଼ା ବା ଆସନ ଦିଅନ୍ତି । ମଠମାନଙ୍କରୁ ଆସିଥିବା ବଲ୍ଲଭ ପନ୍ତିରେ ଲଗାଇବା ପାଇଁ ମହାସୁଆରଙ୍କୁ ଦେଇଥାନ୍ତି । ଦୈନିକ ସମସ୍ତ ଆଳତିରେ ୨୧ ବତି ଓ ପିଷ୍ଟକ ଆଳତି ସଜାଇ ଲଗାଇ ଦିଅନ୍ତି ।

(୨୦) *ଗରାବଡୁ* : ଏ ସେବକ ପୂଜା ଓ ଆଳତି ଇତ୍ୟାଦି ସମୟରେ ପୁଷ୍ପାଳକ ଓ ପୂଜାପଣ୍ଡା ସେବକମାନଙ୍କୁ ହାତୁଆଣି (ହାତକୁ ପାଣି ବଢ଼ାଇବା) ଦିଅନ୍ତି । ପୂଜା ଓ

ଅବକାଶ ସମୟେ ମଣୋହି ପାଇଁ ଜଳ ଦେବା ଓ ଝରିରେ ପାଣି ଲଗାନ୍ତି । ସମସ୍ତ ଘସା ଜଳ ପ୍ରସ୍ତୁତ କରନ୍ତି । ପହୁଡ଼ ସମୟେ ଶୟନ ଠାକୁର ବିଜେ କରିବା ଇତ୍ୟାଦି କାର୍ଯ୍ୟ କରିଥାନ୍ତି ।

(୨୧) *ପତି ମହାପାତ୍ର* : ଏହି ସେବକ ଦୈନିକ ନୃସିଂହଙ୍କ ସେବା କରନ୍ତି ଓ ବଡ଼ ସିଂହାର ପହୁଡ଼ ଆଳତିରେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଆଳତି କରନ୍ତି । ଏହି ସେବକଙ୍କର ପୁଷ୍ପାଳକ ଓ ମହାଜନ ସେବା ରହିଅଛି ।

(୨୨) *ମୁଖ ପଖାଳ* : ଏହି ସେବକ ପ୍ରତ୍ୟହ ଅବକାଶ ସମୟରେ ଠାକୁରଙ୍କର ଦାନ୍ତକାଠି ପ୍ରସ୍ତୁତ କରନ୍ତି ଏବଂ ଅବକାଶ ପୂଜା ଠା କରିବା ସହିତ ତିନୋଟି ରୂପା ପିଙ୍ଗଣରେ ସୁବାସିତ ଜଳ ପ୍ରସ୍ତୁତ କରି ପାଳିଆଙ୍କୁ ବଢ଼ାଇଥାନ୍ତି । ଅବକାଶ ପୂଜା ବସିବା ପାଇଁ ସିଂହାସନରେ ଡାକିଥାନ୍ତି ।

(୨୩) *ମୁଦ୍ରା* : ଦୈନିକ ଏହି ସେବକ ଶୟନ ଠାକୁର ବିଜେ ସମୟ ଠାରୁ ଠାକୁର ଶୟନ ଘରକୁ ଫେରିବା ଯାଏ, ଠାକୁରଙ୍କ ସହ ରହି ଆଗରେ ବଇଠା ଦେଖାଇବେ । ପହୁଡ଼ ପରେ କଳାହାଟ ଦ୍ୱାର ବନ୍ଦ ସମୟରେ ପ୍ରତିହାରୀ କଡ଼ା ବନ୍ଦ କରି ମାଟି ମୁଦ ଦେଲେ ଏ ମୁଦୁଲି ଠାରୁ ମୁଦ ନେଇ ମାଟିରେ ମୁଦ୍ରା ଦେଇ ମୁଦ ମୁଦୁଲିକୁ ଫେରାଇ ଦେବେ ।

(୨୪) *ଖୁଣ୍ଟିଆ* : ଦୈନିକ ମଙ୍ଗଳ ଆଳତି ପାଇଁ ଏହି ସେବକ ପାଳିଆ ପୁଷ୍ପାଳକଙ୍କୁ ଡାକିଥାନ୍ତି । ବାସ୍ତବିକ୍ ଅଧିକାଂଶ ଦିନ ଏହି କାର୍ଯ୍ୟ ଚର୍ଚ୍ଚା କର୍ମଚାରୀମାନଙ୍କ ଦ୍ୱାରା କରା ଯାଉଅଛି । ଅବକାଶ ସମୟରେ ଠାକୁରମାନଙ୍କ ତଡ଼ପ ଉତୁରି ଲାଗିରେ ଖଣ୍ଟୁଆ ଧରି ଆଗରେ ଠିଆ ହୁଅନ୍ତି । ଏହିପରି ରାତ୍ର ଚନ୍ଦନ ଲାଗି ସମୟରେ ମଧ ଖଣ୍ଟୁଆ ଧରି ଠାକୁରଙ୍କ ସମ୍ମୁଖରେ ଠିଆ ହୋଇଥାନ୍ତି । ପ୍ରତ୍ୟେକ ବେଶରେ ଉକ୍ତ ସେବକ ବଟା ଉପରୁ (ଫୁଲ ଓ ତୁଳସୀ ରଖାଯିବା ସ୍ଥାନକୁ ବଟା କୁହାଯାଏ) ମାଳଚୁଳ ପରୀକ୍ଷା ପୂର୍ବକ ନେଇ ପୁଷ୍ପାଳକଙ୍କୁ ଦେଇଥାନ୍ତି । ରାତ୍ର ଚନ୍ଦନ ଲାଗି ସିଂହାସନ ପାଖରେ ମହାପ୍ରଭୁଙ୍କ ବାଡ଼ରେ ଠିଆ ହୋଇ ଯୋଡ଼ା ବେତ ଧରି ମଣିମା ଡାକ ଦେବେ । ପ୍ରତ୍ୟେକ ଷୋଡ଼ଶ ଉପଚାର ଭୋଗରେ ପତ୍ରି ଡାକିଲେ ଏହି ସେବକ ବଟା ଉପରେ ଥିବା ମାଳ ନେଇ ପୂଜା ବସିଥିବା ପଣ୍ଡାମାନଙ୍କୁ ଦିଅନ୍ତି । ପାଳିଆ ପୁଷ୍ପାଳକ ସିଂହାସନ ଉପରକୁ ଉଠିବା ବେଳେ ଓ ଓହ୍ଲାଇବା ବେଳେ ଏହାକୁ କହି ଯାଇଥାନ୍ତି । ପ୍ରତ୍ୟେକ ଦିନ ରାତ୍ର ବଡ଼ ସିହାର ବେଶ ବଢ଼ିଲେ କର୍ପୂର ନେଇ ପୁଷ୍ପାଳକଙ୍କ ହାତକୁ ବଢ଼ାନ୍ତି । ଅଳଙ୍କାର ଲାଗିରେ କର୍ପୂର ବଢ଼ାନ୍ତି । ପହୁଡ଼ ନୀତି ପାଇଁ ପଲଙ୍କ ବିଜେ ପାଇଁ ଖଟ ଶେଯ ମେକାପକୁ ଡାକିଥାନ୍ତି । ରାତ୍ର ପୁଷ୍ପାଞ୍ଜଳି ଠାକୁରଙ୍କ ସହ ମଣିମା ଡାକ ଦେଇ ଜୟ ବିଜୟ ଦ୍ୱାରକୁ ଆସନ୍ତି ଓ ପହୁଡ଼ ଆଳତି ପରେ ପୁଷ୍ପାଞ୍ଜଳି ପକାନ୍ତି । ମଣିମା ଡାକ ଦେବା ସମୟେ ବେତ ଧରନ୍ତି । ଏହା ଛାମୁ

ଖୁଣ୍ଟିଆ ସେବା । ଏତଦ୍‌ବ୍ୟତୀତ ଘଟୁଆରି ଘରୁ ଚନ୍ଦନ ବିଜେ ସମୟେ ଆଗରେ ବେତ ଧରି ପାଳିଆ ଖୁଣ୍ଟିଆ ଆସନ୍ତି ।

(୨୫) *ବେହେରା ଖୁଣ୍ଟିଆ* : ପ୍ରତ୍ୟହ ପୂର୍ବଦିନ ରାତ୍ର ପହୁଡ଼ ସମୟରେ ଲାଗି ହୋଇଥିବା ପୁଷ୍ପ ଅଳଙ୍କାର, ପଇଡ଼, ପ୍ରସାଦ ଆଦି ଶ୍ରୀନହରକୁ ପଠାଯିବା ଉଦ୍ଦେଶ୍ୟରେ ଗାରଦରେ ଜମା ଦେଇଥାନ୍ତି ।

(୨୬) *ଗୋଛିକାର* : ଏହି ସେବକ ପ୍ରତିହାରୀ ଗୋଷ୍ଠୀର ଅଟନ୍ତି । ପ୍ରତ୍ୟହ ସକାଳ ଧୂପ, ଦ୍ୱିପ୍ରହର ଧୂପ ଓ ସନ୍ଧ୍ୟା ଧୂପ ସମୟରେ ଜୟ ବିଜୟ ଦ୍ୱାରେ ଉପସ୍ଥିତ ରହି ଲୋକ ରୋକିବେ ।

(୨୭) *ଭଣ୍ଡାର ମେକାପ* : ଠାକୁରମାନଙ୍କର ନିତ୍ୟ ବ୍ୟବହୃତ ଲାଗି ସୁନା ଓ ରୁପା ଜିନିଷମାନ ଏହାଙ୍କ ଜିମାରେ ରହେ । ବିଭିନ୍ନ ନୀତିରେ ଆବଶ୍ୟକ ସମୟରେ ପାଳିଆ ମେକାପ ଏହାଙ୍କ ଠାରୁ ମଣତି କରି ନେଇ ମଇଲମ ପରେ ପୁନରାୟ ତାଙ୍କ ଜିମାରେ ଏହି ଜିନିଷାତ୍‌ମାନ ଫେରସ୍ତ ଦେଇଥାନ୍ତି । ସୁନାର ଶୟନ ଠାକୁର, ପୁଷ୍ପାଞ୍ଜଳି ଠାକୁର, ରୂପାର ଲୋକନାଥ ଓ ଦୁର୍ଗା ମୂର୍ତ୍ତି ଏହାଙ୍କ ମାରଫତ୍‌ରେ ରହନ୍ତି ଓ ତାହାଙ୍କ ସେବା ଏ କରିଥାନ୍ତି । ଅନ୍ୟାନ୍ୟ ଜିନିଷାତ୍ ମଧ୍ୟରେ ରୂପା ପିଙ୍ଗଣ, ଝରି, ଜୟ, ମଙ୍ଗଳ, ସୁନା କର୍ପୂର ଆଳତି, ୩ ମୂର୍ତ୍ତି ରୂପା ପାତ୍ର ସଜ (ମୋଟ୍ ୩୧ ମୂର୍ତ୍ତି), ସୁନା ଜିଭ ୩ଟି, ସୁନା ପଦକ ଉପଚାର ୩ ମୂର୍ତ୍ତି, ଛାପ (ମୁଦ୍ରା) ଇତ୍ୟାଦି ଏହାଙ୍କ ଜିମାରେ ରହେ ।

(୨୮) *ପାଳିଆ ମେକାପ* : ଏହି ସେବକ ପ୍ରତିଦିନ ଦ୍ୱାର ଫିଟା ନୀତିରେ ଉପସ୍ଥିତ ଥାଇ ଛାମୁଦ୍ୱାର ଫିଟିଲେ ଅଖଣ୍ଡ ମେକାପଙ୍କ ସହ ବଇଠା ଧରି ଭିତରକୁ ଯାଆନ୍ତି ଓ ଶ୍ରୀଅଙ୍ଗ ଠିକ୍ ଅଛି କି ନାହିଁ ଦେଖନ୍ତି । ଭଣ୍ଡାର ମେକାପ ଠାରୁ ସୁନା ଆଳତି ବଟା ନେଇ ସିଂହାସନ ଉପରେ ରଖି ମଙ୍ଗଳ ଆଳତି ସକାଶେ କର୍ପୂର ବସାନ୍ତି ଓ ବଳିତା ଜଳାଇ ଦିଅନ୍ତି । ଆଳତି ପରେ ପୁଷ୍ପାଳକମାନେ ସିଂହାସନକୁ ଉଠିବାବେଳେ ଏହାଙ୍କ ଠାରୁ ଶ୍ରୀଅଙ୍ଗ ମଣି ନିଅନ୍ତି । ସାହାଣ ମେଲାରେ ତିନି ବାଡ଼ରେ ଏହି ସେବକ ରହି ଗଡ୍ଡୁ ଧରି ଠିଆ ହୁଅନ୍ତି । ସାହାଣ ମେଲା ପରେ ଅନ୍ୟ ସମୟରେ ପରିମାଣିକ ହେଲେ ଏହାଙ୍କୁ ଓ ଖୁଣ୍ଟିଆଙ୍କୁ ଜଣାଇବା ପରେ ଯାତ୍ରୀମାନେ ଭିତରକୁ ଯାଇଥାନ୍ତି । ତିନି ଧୂପରେ ଉପଚାର ସୁନା ଅଳଙ୍କାର ଭଣ୍ଡାର ମେକାପ ଠାରୁ ନେଇ ପୂଜାପଣ୍ଡାଙ୍କୁ ଦିଅନ୍ତି ଓ ଭୋଗ ପରେ ଓ୍ୱାପସ ଆଣି ଭଣ୍ଡାରେ ଜମା କରନ୍ତି । ଦୈନିକ ଚନ୍ଦନ ଲାଗିଲେ ଭଣ୍ଡାର ଘର ଠାରୁ ଚନ୍ଦନ ବିଜେ କରାଇ ଭିତରେ ପାଳିଆ ଖୁଣ୍ଟିଆକୁ କହି ତିନି ବାଡ଼ରେ ଚନ୍ଦନ ଲାଗି ବଢ଼ାନ୍ତି । ଓଲାଗି ପରେ ପିଙ୍ଗଣମାନ ଭଣ୍ଡାରରେ ଜମା ଦିଅନ୍ତି । ପହୁଡ଼ ସମୟରେ କାଛ ଉପରେ ଜଳୁଥିବା ବଇଠା ଓହ୍ଲାନ୍ତି । ପହୁଡ଼ ଆଳତି ଓ ଜୟ ବିଜୟ ଦ୍ୱାର ଶୟନ ଠାକୁରଙ୍କ ଆଳତିରେ କର୍ପୂର ଲଗାନ୍ତି । ପହୁଡ଼ ବେଳେ ମଣିମା ଡାକ ଦିଅନ୍ତି ଓ ଦ୍ୱାର ବନ୍ଦ ବେଳେ ଉପସ୍ଥିତ ରହି ଜୟ ବିଜୟ ଦ୍ୱାରେ ରାତ୍ରରେ ଶୋଇଥାନ୍ତି ।

(୨୯) *ଚାଙ୍ଗଡ଼ା ମେକାପ* : ସକାଳ ମଙ୍ଗଳ ଆଳତି ଠାରୁ ବଡ଼ ସିଂହାର ବେଶ ପର୍ଯ୍ୟନ୍ତ ପ୍ରତ୍ୟହ ଠାକୁରଙ୍କ ବିଭିନ୍ନ ବେଶ ଓ ମଇଲମ ସମୟରେ ଏହି ସେବକ ଚାଙ୍ଗଡ଼ା ଘରୁ ଲୁଗା ଆଣି ପୁଷ୍ପାଳକଙ୍କୁ ଦେବେ ଓ ଉଲାଗି ଲୁଗା ନେଇ ଲୁଗାଧୁଆକୁ ଦେଇଥାନ୍ତି । ପ୍ରତ୍ୟେକ ଧୂପରେ ଉପଚାର ବସ୍ତ୍ର, ଆସନ ପଡ଼ା ଇତ୍ୟାଦି ଯୋଗାଇଥାନ୍ତି । ବିଶେଷତଃ ଏହାଙ୍କ ମାରଫତ୍‌ରେ ଠାକୁରମାନଙ୍କର ନିତ୍ୟ ବ୍ୟବହୃତ ଲୁଗା ରହିଥାଏ ।

(୩୦) *ଖଟଶେଜ ମେକାପ* : ସାଧାରଣତଃ ଠାକୁରଙ୍କ ଦୈନନ୍ଦିନ ନୀତିରେ ଦୁଇଜଣ ଖଟଶେଜ ମେକାପ ସେବକଙ୍କର ଆବଶ୍ୟକତା ପଡୁଅଛି । ପ୍ରତ୍ୟହ ଦ୍ୱାରଫିଟା ପରେ ଉକ୍ତ ସେବକମାନେ ଶ୍ରୀବିଗ୍ରହଙ୍କ ରତ୍ନପଲଙ୍କକୁ ବାହାର କରି ଖଟଶେଯ ଘରକୁ ବିଜେ କରାନ୍ତି । ପଲଙ୍କ ତଳେ ଥିବା ପଇଡ଼, ଘସା ଓ ବିଡ଼ିଆ ଇତ୍ୟାଦି ଖଟଶେଜ ଘରକୁ ଆଣିଥାନ୍ତି । ସେହିପରି ଦିବା ପହୁଡ଼ ଓ ରାତ୍ର ପହୁଡ଼ରେ ପଲଙ୍କ ସଜାଡ଼ି ଭିତରେ (ପୋଖରିଆରେ) ପକାଇଥାନ୍ତି । ପ୍ରତ୍ୟେକ ଦିନ ଖଟଶେଜ ଘରେ ଥିବା ଦେବୀମାନଙ୍କୁ ପାଣି ଦିଅନ୍ତି । ଏହାଙ୍କର ପ୍ରତ୍ୟହ ଡମ୍ବରୁ ସେବା ରହିଅଛି । ପ୍ରତ୍ୟେକ ଦିନ ଶୟନ ନୀତି ସମୟରେ ଭଣ୍ଡାରରୁ ଡମ୍ବରୁ ନେଇ ଜୟ ବିଜୟ ଦ୍ୱାର ଉପରେ ପକାଇଥାନ୍ତି । ପୁଷ୍ପାଞ୍ଜଳି ନୀତି ସରିବା ପରେ ପୂର୍ବସ୍ଥାନରେ ଆଣି ପୁନଶ୍ଚ ରଖିଥାନ୍ତି ।

(୩୧) *ଜ୍ୟୋତିଷ (ଜ୍ୟୋତିଷ ଖୁରି ନାହାକ)* : ଏ ହେଉଛନ୍ତି ବ୍ରାହ୍ମଣ ସେବକ, ପ୍ରତ୍ୟେକ ଦିନ ଅବକାଶ ପୂଜା ସମୟରେ ପାଞ୍ଜିନେଇ ପର୍ବ, ଯାନି, ଯାତ୍ରା, ନକ୍ଷତ୍ର, ନକ୍ଷତ୍ର ବନ୍ଦାପନା ଇତ୍ୟାଦି ତଢ଼ାଉ କରଣଙ୍କୁ ଜଣାଇଥାନ୍ତି । ପ୍ରତ୍ୟହ ଏହି ସମୟରେ ଠାକୁରମାନେ ଦୈନିକ ରାଶି ନକ୍ଷତ୍ର ଇତ୍ୟାଦି ସଂପର୍କରେ ପଢ଼ି ଶ୍ରୀଛାମୁରେ ଜଣାନ୍ତି ।

(୩୨) *ଘଟୁଆରି* : ପ୍ରତ୍ୟେକ ଦିନ ଏହି ସେବକ ଠାକୁରମାନଙ୍କ ପୂଜା, ଧୂପ ଓ ଚନ୍ଦନ ଲାଗି ସମୟରେ ଆବଶ୍ୟକ ପଡୁଥିବା ସମସ୍ତ ଚନ୍ଦନ ଘୋରି ଯୋଗାଇଥାନ୍ତି । ସମସ୍ତ ଚନ୍ଦନ କାଠ ମନ୍ଦିର ପ୍ରଶାସନ ତରଫରୁ ଯୋଗାଇ ଦିଆ ଯାଇଥାଏ । ରାତ୍ର ଚନ୍ଦନଲାଗି ନୀତି ନିମନ୍ତେ ଘୋରା ଚନ୍ଦନ ରୁପା ପିଙ୍ଗଣରେ ପାଳିଆ ମେକାପକୁ ବଢ଼ାନ୍ତି, ବାକି ସମୟରେ ଚନ୍ଦନ ଅର୍ଗଳି ପାଶରେ ପତ୍ରିବଡୁ ହାତକୁ ଚନ୍ଦନ ବଢ଼ାନ୍ତି ।

(୩୩) *ମୁଦୁଲି* : ଠାକୁରଙ୍କ ଦୈନିକ ପାତ୍ରସଜ ଓ ପୂଜା ଉପକରଣ, ସୁନା ମୁଦ୍ରା ଛାପ ଇତ୍ୟାଦି ଏହାଙ୍କ ପାଖରେ ଥାଏ । ଥାଳି, ଗରା, ପରଖ, ଝରି ଇତ୍ୟାଦି ପାଣିଆପଟ ବଡ଼ସିଂହାର ଭୋଗ ପରେ ମୁଦୁଲି ସେବକଙ୍କ ଜିମାରେ ରହେ । ଶ୍ରୀମନ୍ଦିରର ପହୁଡ଼ ନୀତି ପରେ ଦ୍ୱାର ବନ୍ଦ ଓ ତତ୍‌ପରଦିନ ଦ୍ୱାରଫିଟା ନୀତିରେ ଏହି ସେବକଙ୍କର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ପଡ଼ିଥାଏ । ମୁଦ ତନଖି ହେଲାପରେ ଏ ଦ୍ୱାରର ତାଲା ଫିଟାଇଥାନ୍ତି । ମୁଖ୍ୟତଃ ମନ୍ଦିରର ତାଲା ଚାବି ଏହାଙ୍କ ଜିମାରେ ରହିଥାଏ ।

(୩୪) *ପୁରାଣ ପଣ୍ଡା* : ଏହି ସେବକ ପ୍ରତିଦିନ ତିନି ଧୂପରେ ଟେରା ପଡ଼ିବା ଠାରୁ ଫିଟିବା ପର୍ଯ୍ୟନ୍ତ କଳାହାଟ ଦ୍ୱାର ଲଣ୍ଡାବର୍ତ୍ତ ଉପରେ ବଇଠା ରଖି ଶ୍ରୀମଦ୍ ଭାଗବତ ପଢ଼ିଥାନ୍ତି । ଏହାଙ୍କ ପାଖରେ ଉକ୍ତ ତାଳପତ୍ର ପୋଥି ରହିଅଛି ।

(୩୫) *ଲୁଗାଧୁଆ (ପାଣିକୁଣ୍ଡ ସେବକ)* : ଦୈନିକ ମଙ୍ଗଳ ଆଳତି ପୂର୍ବରୁ ଏହି ସେବକ ବିମଳାଙ୍କ କୂପରୁ ପାଣି ଆଣି ବଟ ଅବକାଶ ମନ୍ଦିର ପିଣ୍ଡାରେ ଥିବା କୁଣ୍ଡରେ ରଖିଥାନ୍ତି । ସେବାକୁ ଆସିବା ପାଳିଆ ସେବକମାନେ ଗୋଡ଼ ଧୋଇବା ସକାଶେ ଏହି କୁଣ୍ଡରୁ ପାଣି ନେଇଥାନ୍ତି ।

(୩୬) *ବଲ୍ଲଭ ଯୋଗାଣିଆ* : ଉକ୍ତ ସେବକ ପ୍ରତ୍ୟହ ରୋଷ ହୋମ ସରିଲେ ବଲ୍ଲଭ ଘରୁ ଗୋପାଳବଲ୍ଲଭ ଆଣି ସୁଧ ସୁଆରଙ୍କ ମାରଫତ୍‌ରେ ଧୁକୁଡ଼ି ଦ୍ୱାର ଠାରେ ଦେଇଥାନ୍ତି । ଏତଦ୍‌ବ୍ୟତୀତ ବଲ୍ଲଭ କୋରା ଇତ୍ୟାଦି ମନ୍ଦିରର ଅନ୍ୟାନ୍ୟ ପାର୍ଶ୍ୱ ଦେବତାଙ୍କ ଭୋଗ ଉଦ୍ଦେଶ୍ୟରେ ଯୋଗାଇଥାନ୍ତି ।

(୩୭) *ହଡ଼ପ ନାଏକ* : ପ୍ରତ୍ୟହ ବିଭିନ୍ନ ଧୂପ ବେଳେ ଠାକୁରଙ୍କ ମଣୋହି ନିମନ୍ତେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ବିଡ଼ିଆ (ପାନ) ନୀତି ସଂପୃକ୍ତ ସେବକଙ୍କୁ ଯୋଗାଇଥାନ୍ତି । ବଡ଼ ସିଂହାର ଭୋଗ ପରେ ମୁଦୁଲି ଠାରୁ ବଟା ନେଇ ବିଡ଼ିଆ ତିନି ବାଡ଼ରେ ପୁଷ୍ପାଳକଙ୍କ ହାତକୁ ବଢ଼ାଇଥାନ୍ତି । ଦୈନିକ ଚନ୍ଦନ ଲାଗି ନୀତି ସରିବା ପରେ ଭଣ୍ଡାର ମେକାପ ଠାରୁ କର୍ପୂର ଓ ବିଡ଼ିଆ ନେଇ ପାର୍ଶ୍ୱ ଦେବତାଙ୍କୁ (ମଦନମୋହନ, ବିମଳା, ନୃସିଂହ, ଲକ୍ଷ୍ମୀ, ସରସ୍ୱତୀ) ଯୋଗାନ୍ତି ।

(୩୮) *ବିଡ଼ିଆ ଯୋଗାଣିଆ* : ଏହି ସେବକ ଦୈନିକ ଠାକୁରଙ୍କ ବିଭିନ୍ନ ନୀତିରେ ଯେତେ ବିଡ଼ିଆ (ପାନ) ଆବଶ୍ୟକ ଯଥା ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପରେ ୭ ଖଣ୍ଡ ଲେଖାଏଁ ନଳି ବିଡ଼ିଆ, ଚନ୍ଦନଲାଗି ନିମନ୍ତେ ୨୦ଖଣ୍ଡ ଚଉଡ଼ା ବିଡ଼ିଆ, ବଡ଼ ସିଂହାର ନୀତିରେ ୮ ଖଣ୍ଡ ନଳି ବିଡ଼ିଆ, ପହୁଡ଼ ସମୟରେ ୪୨ ଖଣ୍ଡ ଖିଲି ବିଡ଼ିଆ ଓ ପାର୍ଶ୍ୱ ଦେବତାମାନଙ୍କ ନିମନ୍ତେ ୧୨ ଖଣ୍ଡ ଖିଲି ବିଡ଼ିଆ ହଡ଼ପ ଘରେ ତିଆରି କରି ହଡ଼ପ ନାଏକଙ୍କ ଜିମାରେ ଦେଇଥାଏ ।

(୩୯) *ପ୍ରଧାନୀ* : ଏହି ସେବକଙ୍କର ଦୈନନ୍ଦିନ ନୀତିରେ କେତେକ କାର୍ଯ୍ୟ ଥିଲେ ମଧ୍ୟ ବହୁବର୍ଷ ଧରି ଏହା ପାଳିତ ହେଉନାହିଁ । ପ୍ରତ୍ୟହ ସକାଳ ଧୂପ ଠାରୁ ସନ୍ଧ୍ୟା ଧୂପ ପର୍ଯ୍ୟନ୍ତ ଟେରା ବନ୍ଧା ହୋଇ ମୁରୁଜ ପଡ଼ିବା ପରେ ପ୍ରତିହାରୀ ସହ ରୋଷକୁ ଭୋଗ ଡାକି ଯାଇ ରୋଷ ଦ୍ୱାରରୁ ଭିତର କାଠ ପର୍ଯ୍ୟନ୍ତ ଭୋଗ ଆଗରେ ରହି ଆସିଥାଆନ୍ତି ।

(୪୦) *ଲେଙ୍କା* : ଏ ସେବକ ପ୍ରତ୍ୟହ ସୂର୍ଯ୍ୟ ପୂଜା ବସିବା ନିମନ୍ତେ ପୂଜାପଣ୍ଡାଙ୍କୁ ଡାକିଥାନ୍ତି । ଧ୍ୱଜା ବନ୍ଧାରେ ଉପସ୍ଥିତ ରହନ୍ତି ।

(୪୧) *ଜଗିଆ ମହାସୁଆର (ଜଗିଆ ଅମିନ, ରୋଷ ଅମିନ)* : କୋଠ ଭୋଗ ରୋଷରେ ବଡ଼ ସୁଆରଙ୍କୁ ଭୋଗ ପ୍ରସ୍ତୁତ ନିମନ୍ତେ କୋଠ ଭୋଗ ଜିନିଷ ଦେବେ । ସମସ୍ତ

ପିଠା, ପଣା ଓ ଅନ୍ୟାନ୍ୟ କୋଠ ଭୋଗ ଦ୍ରବ୍ୟ ଠିକ୍‌ରୂପେ ହୋଇଛି କି ନାହିଁ ତନଖି କରିବେ । ରୋଷର ସମସ୍ତ ବିଷୟରେ ଦାୟିତ୍ୱ ନେବେ ଓ ଭୋଗ ପ୍ରସ୍ତୁତ ବେଳେ ଜଗି ରହିବେ ।

(୪୨) *ପାଳିଆ ମହାସୁଆର* : ଏ ସେବକ ପ୍ରତ୍ୟହ ରୋଷ ପରିଷ୍କାର ଅଛି କି ନାହିଁ ସେ ସଂପର୍କରେ ଦେଖିବେ ଏବଂ ହୋମ ପାଇଁ ଅନୁମତି ଦେବେ । ସୂପକାରମାନେ ରୋଷରେ ଅମୃତ ମଣୋହି ପ୍ରସ୍ତୁତ କଲାବେଳେ ତାହା ଉତ୍ତମ ରୂପେ ରନ୍ଧାଇବେ । ବଲ୍ଲଭ ପୂଜାବେଳେ ସୁଧ ସୁଆର ଠାରୁ ଭୋଗ ଦ୍ରବ୍ୟନେଇ ପନ୍ତିରେ ବାଢ଼ିବେ । ଗରାବଡୁ ଠାରୁ ଘଷାଜଳ ନେଇ ପନ୍ତିରେ ଲଗାନ୍ତି । ପ୍ରତ୍ୟେକ ପଣ୍ଟି ବାଢ଼ିବା ବେଳେ ବାଘମୁହାଁ ମୁହଁରେ ରାନ୍ଧିବେ । ପ୍ରତ୍ୟେକ ଧୂପରେ ପ୍ରଥମ ଛେକ ଏମାନେ ନେଇ ପନ୍ତିରେ ବାଢ଼ିବା ସଙ୍ଗେ ସଙ୍ଗେ ସେଠାରେ ଉପସ୍ଥିତ ଥାଆନ୍ତି ।

(୪୩) *ପିଠା ସୁଆର* : କୋଠ ଭୋଗର ସବୁ ଧୂପର ପିଠାମାନ ତିଆରି କରିଥାନ୍ତି ।

(୪୪) *ବିଣ୍ଡୁଆ* : ଏହି ସେବକ ଭିନ୍ନ ଭିନ୍ନ ପିଠାର ବିଣ୍ଡ କରି ପିଠା ସୁଆରଙ୍କୁ ଯୋଗାଇ ଦିଅନ୍ତି । ଏତଦ୍‌ବ୍ୟତୀତ ଅଟା, ବିରି, ଚୂନା ଇତ୍ୟାଦି ଚକଟି ଆବଶ୍ୟକୀୟ ମସଲା ଏଥିରେ ପକାଇଥାନ୍ତି । ପିଠା ଆସନରେ ରହିବା ପରେ ସରାମାନଙ୍କରେ ରଖିଥାନ୍ତି ।

(୪୫) *ଚଣାପୁଆ* : ଏହି ସେବକ କୋଠ ଭୋଗର ଲଡୁ, ପାରିଜାତକ, ନୁଣୁଖୁରୁମା, ଛୋଟ ଧରଣର ପିଠା ତିଆରି କରନ୍ତି । ଧୂପମାନଙ୍କର ଭଜା ସବୁ ଭାଜିଥାନ୍ତି ।

(୪୬) *ପାଗୁଆ* : ଏଣ୍ଡୁରି, ମଣ୍ଡା, ଗଇଁଠା ଇତ୍ୟାଦି ତିଆରି କରନ୍ତି । ଯେତେ ଜିନିଷ ପାଗ ହୁଏ, ଏ କରିଥାନ୍ତି ଓ ପୁର ଖରଡ଼ି ଥାନ୍ତି ।

(୪୭) *ତୋଳାବଡୁ* : ବିଣ୍ଡୁଆ ଓ ପାଗୁଆ ସେବକ ରଖିଥିବା ଜିନିଷ ଗଣତି କରି ତାଡ଼ମାନଙ୍କରେ ରଖି ବାଘମୁହଁ ବାନ୍ଧି ଛେକ ନେଇଥାନ୍ତି ଓ ବାଡ଼ ଅନୁଯାୟୀ ରଖିଥାନ୍ତି । ଭୋଗ ସରିଲେ ଭୋଗ ସାଇତା ସୁଆରବଡୁଙ୍କୁ ମଣାଇ ଦେଇଥାନ୍ତି ।

(୪୮) *ତୁ'ଣ ସୁଆର* : ଦୈନିକ କୋଠ ଭୋଗ ନିମନ୍ତେ ସମସ୍ତ ପ୍ରକାର ଖିରି, କଡ଼ମ୍ବା, ପଖାଳ, ତୁଣ, କାନିକା ଏହି ସେବକ ରାନ୍ଧିଥାନ୍ତି । କାନିକାରେ ଜଗିଆ ମହାସୁଆରଙ୍କ ସାମନାରେ ପନ୍ତିବଡୁ ଘିଅ ପକାଇଥାନ୍ତି ।

(୪୯) *ଥାଳି ସୁଆର* : କୋଠ ଭୋଗର ଥାଳି ଅନ୍ନ, ଥାଳି ଖେଚେଡ଼ି, ସାଦା ଓରିଆ ଓ ସନ୍ଧ୍ୟା ଧୂପ ପଖାଳ ରାନ୍ଧିଥାନ୍ତି ।

(୫୦) *ଅମାଲୁ ସୁଆର* : ଦୈନିକ କୋଠ ଭୋଗ ପାଇଁ ସମସ୍ତ ଅମାଲୁ ପ୍ରସ୍ତୁତ କରନ୍ତି ।

(୫୧) *ବିଡୁଆ ପନ୍ତିବଡୁ* : ସକାଳ ଧୂପ ଓ ମଧ୍ୟାହ୍ନ ଧୂପରେ ଥାଳି ସୁଆର ରାନ୍ଧିସାରି ବିଡୁଆ ପନ୍ତିବଡୁଙ୍କୁ ମଣାଇ ସାରିଲେ ଉକ୍ତ ସେବକ ସେଥିରେ ଘିଅ, ଅଦା ଇତ୍ୟାଦି ଦେଇ ଠିକ୍ କରିବେ ଓ ବିରି ଚିହ୍ନ ଦେଇ ସରକାରୀ ଓ ସେବକ ପାଉଣା ମୁତୁମୂଳ କରିବେ । ବିଡୁଆ ପନ୍ତିବଡୁ ଥାଳିମାନଙ୍କରେ ବାଡ଼ରେ ଘିଅ ପରଶେ ।

(୫୨) *ପନ୍ତିବଡୁ* : ଭୋଗ ଡାକରା ହେଲେ ବିଡୁଆ ପନ୍ତିବଡୁ, ପାଳିଆ ମହାସୁଆରଙ୍କ ସହ ଉକ୍ତ ସେବକ ଶ୍ରୀଛାମକୁ ଛେକ ନେଇଥାଆନ୍ତି । ଥାଳି ଭୋଗଛଡ଼ା ଅନ୍ୟ ଯେତେକ କୋଠ ଭୋଗ ଜିନିଷ ଥାଳି ଓ ତୁଣ ସୁଆରଙ୍କ ଠାରୁ ପାଳିଆ ପନ୍ତିବଡୁ ଛେକ ନେଇ ଛାମୁରେ ଲଗାଇଥାନ୍ତି । ଭୋଗ ପରେ ପାଳିଆ ପନ୍ତିବଡୁ ବିମଳାଙ୍କୁ ଶ୍ରୀବଳଭଦ୍ରଙ୍କ ବାଡ଼ ଥାଳି ସମର୍ପଣ ପାଇଁ ନେଇଥାନ୍ତି । ସନ୍ଧ୍ୟା ଧୂପରେ ଏହି ସେବକ ପଖାଳ ଓ ଶାକରା ପନ୍ତିରେ ଲଗାନ୍ତି ଓ ଭୋଗ ପରେ ଖେଇକାରମାନଙ୍କୁ ଦିଅନ୍ତି ।

(୫୩) *ବେହେରା ପନ୍ତିବଡୁ* : ଧୂପମାନଙ୍କରେ ଅନ୍ୟାନ୍ୟ ପନ୍ତିବଡୁଙ୍କ ଭଳି ଉକ୍ତ ସେବକ ଛେକରେ ଖେଚେଡ଼ି, ଅନ୍ନ ଇତ୍ୟାଦି ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଲଗାଉଥିବାରୁ ତାଙ୍କୁ 'ବେହେରା ପନ୍ତିବଡୁ' କୁହାଯାଏ ।

(୫୪) *ଚନ୍ଦ୍ରକାନ୍ତି ମହାସୁଆର* : ଏ ସେବକ ପ୍ରତ୍ୟହ ସକାଳ ଧୂପ ପ୍ରଥମ ଛେକରେ ଚନ୍ଦ୍ରକାନ୍ତି ସରା ନେଉଥିବାରୁ ଚନ୍ଦ୍ରକାନ୍ତି ମହାସୁଆର ନାମେ ପରିଚିତ ।

(୫୫) *ରୋଷ ପାଏକ* : ପ୍ରତିଦିନ ରୋଷ ଧୋ ପଖାଳ ଠିକ୍ ରୂପେ ହୋଇଛି ବୋଲି ମହାସୁଆରକୁ କହିବା ପରେ ପୂଜାପଣ୍ଡା ରୋଷ ହୋମ କରିଥାନ୍ତି । ଏ ସେବକ ହୋମ ନିମନ୍ତେ କାଠ ଲଗାଇ ଦେବେ । କୋଠ ଭୋଗର ସମସ୍ତ ଜିନିଷ ଯୋଗାଣିଆ ଠାରୁ ଗ୍ରହଣ କରି ଏମାନେ ଜଗିଆ ମହାସୁଆର ବା ଅମିନଙ୍କୁ ଦେଇଥାନ୍ତି । ସକାଳ ଧୂପରେ ମହାସୁଆର କାନ୍ତିଛେକ ଥାଳିରେ ଥୋଇଲେ ପାଳିଆ ରୋଷ ପାଏକ, ତାହା ଥାଳିରୁ କାଢ଼ି ତଳେ ବାଢ଼ନ୍ତି ଓ ଥାଳିରେ ଖେଚେଡ଼ି ବଢ଼ା ହୁଏ । ରୋଷ ଦ୍ୱାରେ ପ୍ରତିହାରୀ ସ୍ୱରୂପ ଦ୍ୱାର ଜଗନ୍ତି ।

(୫୬) *ବିରିବୁହା* : କୋଠ ଭୋଗ ପିଠା ନିମନ୍ତେ ବଟା ବିରି ବୋହି ନେଇ କୋଠ ଭୋଗ ସୁଆର ଜିମା ଦେଇଥାନ୍ତି ।

(୫୭) *ବାହାର ଦେଉଳି ସୁଆର* : ଦୈନିକ ବାହାର ଦେଉଳି ଭୋଗ ନିମନ୍ତେ ଘିଅ, ଗୁଡ଼, ଅଟା, ଚିନି ପ୍ରଭୃତି ଜିନିଷରେ (ଲକ୍ଷ୍ମୀଙ୍କ ରୋଷ) ବାହାର ଦେଉଳି ରୋଷରେ କାକେରା, ନଡ଼ୁ, ଗଜା, ମହନଭୋଗ ଇତ୍ୟାଦି ପିଷ୍ଟକ ପ୍ରସ୍ତୁତ କରିଥାନ୍ତି ।

(୫୮) *ବାହାର ଦେଉଳି ବିଣ୍ଡ* : ଏ ସୂପକାର ଗୋଷ୍ଠୀର ସେବକ ଅଟନ୍ତି । ବାହାର ଦେଉଳି ରୋଷରେ ପ୍ରସ୍ତୁତ ସମସ୍ତ ପିଠାର ବିଣ୍ଡ (ଗୁଳା) କରିଥାନ୍ତି ।

(୫୯) *ବାହାର ଦେଉଳି ବେଲା :* ଏ ମଧ୍ୟ ସୂପକାର ଗୋଷ୍ଠୀର ଅଟନ୍ତି । ଏମାନେ ଦୈନିକ ବାହାର ଦେଉଳି ରୋଷରେ ତିଆରି ହେଉଥିବା ପିଠାର ବିଣ୍ଡ ବା ଗୁଳାକୁ ବେଲିଥାନ୍ତି ।

(୬୦) *ବାହାର ଦେଉଳି ଯୋଗାଣିଆ :* ଦୈନିକ କୋଠ ଭୋଗ ଗୋଦାମରୁ ବାହାର ଦେଉଳି ଭୋଗ ନିମନ୍ତେ ଆବଶ୍ୟକ ଜିନିଷାଦ୍ ଗ୍ରହଣ କରି ବାହାର ଦେଉଳି ସୁଆରଙ୍କ ଜିମାରେ ଦେଇଥାନ୍ତି ।

(୬୧) *ହାଣ୍ଡି ଯୋଗାଣିଆ :* ଦୈନିକ କୋଠ ଭୋଗ ନିମନ୍ତେ ଆବଶ୍ୟକ ସମସ୍ତ ମାଟି କୁଡୁଆ, ହାଣ୍ଡି, ସରା, ତାଡ଼ ଇତ୍ୟାଦି ରୋଷକୁ ଯୋଗାଇଥାନ୍ତି ।

(୬୨) *ଗନ୍ଧଣ ନିକାପ :* ପ୍ରତ୍ୟହ ରୋଷ ଧୋ ପଖାଳ ହେବା ପରେ ଗୋଦାମରୁ ନଡ଼ିଆ, ଘିଅ, ଜିରା, ଅଦା, ମରିଚ, ହେଙ୍ଗୁ ଇତ୍ୟାଦି ଆଣି ନିକାପ ସରଘରେ ଅଦାକୁ ଧୋଇ, ଜିରା, ମରିଚ ସଫା କରି ପ୍ରତ୍ୟେକ ଧୂପ ପାଇଁ ଗନ୍ଧଣ ଥାଳି ସଜାଡ଼ନ୍ତି । ଉକ୍ତ ଥାଳିକୁ ରୋଷ ଦୁଆର ନିକଟରେ ରୋଷ ପାଏକ ଜିମା ଦେଇଥାନ୍ତି ଓ ନୀତି ସଂପୃକ୍ତ କେତେକ ନିର୍ଦ୍ଦିଷ୍ଟ ସେବକଙ୍କୁ ଘିଅ ବାଣ୍ଟିଥାନ୍ତି ।

(୬୩) *କୋଠ ଭୋଗ ପାଣିଆ :* ଦୈନିକ କୋଠ ଭୋଗ ନିମନ୍ତେ ଆବଶ୍ୟକ ସମସ୍ତ ପାଣି ରୋଷ କୂଅରୁ କାଢ଼ି କୋଠ ଭୋଗ ରୋଷକୁ ଯୋଗାଇଥାନ୍ତି ।

(୬୪) *ଦର୍ପଣିଆ :* ଏମାନେ ଶାଢ଼ୀ ବନ୍ଧାଇବା ପରେ ଅବକାଶ ସମୟରେ ଦର୍ପଣ (ପିତଳ ନିର୍ମିତ) ଯୋଗାନ୍ତି ଓ ଠାକୁରମାନଙ୍କର କେତେକ ନିତ୍ୟ ବ୍ୟବହୃତ ବାସନ ସଫା କରିଥାନ୍ତି ।

(୬୫) *ଧୋ ପଖାଳ :* ପ୍ରତ୍ୟହ ବଡ଼ସିଂହାର ଧୂପ ସରିବା ପରେ ରୋଷଘରମାନ ଓଳାଇ ସଫାକରି ଶଙ୍ଖୁଡ଼ିସବୁ ବାହାର କରି ରୋଷ ମୁହଁ ଅଗଣାରେ ପକାଇଦେବେ । ଏହି ସେବା ନମନ୍ତେ ୩ ଜଣ ସେବକଙ୍କ ଆବଶ୍ୟକତା ପଡ଼ିଥାଏ । ଅନ୍ୟ ଦୁଇଜଣ ସେବକ ମଧ୍ୟରୁ ଜଣେ ରୋଷ ଚୁଲିମାନଙ୍କରେ ଥିବା ଅଙ୍ଗାର ଓ ପାଉଁଶ କାଢ଼ି ବାହାରେ ପକାଇବେ, ନଳା ସଫା କରିବେ । ଅନ୍ୟ ସେବକ ରନ୍ଧା ଚୁଲି ଓ ତଳ ଇତ୍ୟାଦିରେ ଗୋବର ପାଣି ଛେରା ପକାଇବେ ।

ଜମା ହୋଇଥିବା ଅଳିଆ ରବାଡ଼ିଆ ବାହାରେ ପକାଏ ଓ ରୋଷ ଅଗଣା ଧୋ ପଖାଳ କରେ । ସେ ରୋଷ ଅଗଣା କୁଣ୍ଡରେ ପାଣି ଦେଲେ ଧୋ ପଖାଳିଆ ରୋଷ ଧୁଅନ୍ତି । ଧୋ ପଖାଳିଆ ହୋମ ସକାଶେ କୋଠ ଭୋଗ ଚୁଲିରୁ ନିଆଁ ଆଣି ଯୋଗାନ୍ତି ।

(୬୬) *ଘଣ୍ଟୁଆ :* ଉକ୍ତ ସେବକ ଦୈନିକ ଧୂପ; ଯଥା ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପରେ ଘଣ୍ଟ ବଜାଇଥାନ୍ତି । ଏହାଙ୍କର ଘଣ୍ଟ ସେବା ରହିଅଛି ଓ ଶାଢ଼ୀବନ୍ଧା ସେବକ ଅଟନ୍ତି ।

(୬୭) *କାହାଳିଆ* : ଏ ସେବକ ପ୍ରତ୍ୟହ ପୁଷ୍ପାଞ୍ଜଳି, ପହୁଡ଼ ନୀତିରେ କାହାଳି ବଜାଏ ।

(୬୮) *ବଜନ୍ତୀ (ବୈଜୟନ୍ତୀ)* : ଏ ସେବକ (ବାଦ୍ୟକାର) ଦୈନିକ ସକାଳ ଧୂପ ଓ ସନ୍ଧ୍ୟା ଧୂପରେ ବାଜା ବଜାଇବେ ।

(୬୯) *ଛତାର* : ପ୍ରତିଦିନ ଏ ସେବକ ବଡ଼ସିଂହାର ପହୁଡ଼ ଆଳତି ବେଳେ ଶୟନ ଠାକୁରଙ୍କ ପାଖରେ ଛତି ଧରି କଳାହାଟ ଦ୍ୱାରରେ ଠିଆ ହୁଅନ୍ତି ।

(୭୦) *ତଢ଼ାଉକରଣ* : ଏହି ସେବକ ପ୍ରତ୍ୟହ ଦ୍ୱାରଫିଟା ପୂର୍ବରୁ ଶ୍ରୀମନ୍ଦିର ବେହେରଣରେ ଉପସ୍ଥିତ ହୋଇ ଯେଉଁଦିନ ଯେଉଁ ନୀତି ହେବ ତାହା ଦେଉଳକରଣ ଓ ଚର୍ଚ୍ଚା କର୍ମଚାରୀଙ୍କୁ କହିବେ । ମାଦଳା ପାଞ୍ଜି ଦିନକୁ ଦିନ ଗଡ଼ାଇ ଲେଖିବେ । ଠାକୁରଙ୍କର ଯେଉଁଦିନ ବସ୍ତ୍ର ପରିଧାନ ହେବାର କଥା, ତାହା ଚାଙ୍ଗଡ଼ା ମେକାପକୁ କହିଥାନ୍ତି । ପିଣ୍ଡିକା ଆଦି ଆମଦାନୀରେ ଉପସ୍ଥିତ ରହି ସିହା କରିବେ । ଧ୍ୱଜା ବନ୍ଧା ବେଳେ ଉପସ୍ଥିତ ରହିବା ଇତ୍ୟାଦି ବହୁ କାର୍ଯ୍ୟ ଥିଲେ ହେଁ କାଳକ୍ରମେ ଅଧିକାଂଶ କାର୍ଯ୍ୟ ସଂକୁଚିତ ହୋଇଯାଇଛି ।

(୭୧) *ଦେଉଳକରଣ* : ଶ୍ରୀମନ୍ଦିରରେ ସକାଳ ଦ୍ୱାରଫିଟା ଠାରୁ ଆରମ୍ଭ କରି ପହୁଡ଼ ପର୍ଯ୍ୟନ୍ତ ଯେତେ ନୀତି ହୁଏ, ତାହା ଠିକ୍ ସମୟରେ ହେଉଛି କି ନାହିଁ ତଦନ୍ତ କରିବେ । ଭଣ୍ଡାର ଘର ଓ ଚାଙ୍ଗଡ଼ା ଘର ଲୁଗାର ଆୟବ୍ୟୟ ହିସାବ ରଖନ୍ତି । ସେବକମାନେ ନିୟମିତ ଖେଇ ମହାପ୍ରସାଦ ପାଇଲେ କି ନାହିଁ ତାହା ଏହି ସେବକ ବୁଝିବେ । ସୂଚନାଯୋଗ୍ୟ ଯେ, ଏହି ସେବକଙ୍କର ବହୁ କାର୍ଯ୍ୟ ସ୍ୱତ୍ତ୍ୱଲିପିରେ ଉଲ୍ଲେଖ ଥିଲେ ହେଁ ବର୍ତ୍ତମାନ କେତେକ କାର୍ଯ୍ୟ ହେଉନଥିବା ଜଣାଯାଏ ।

(୭୨) *ବେହେରାକରଣ* : ୧୯୮୮ ମସିହାରେ ଏହି ସେବାକୁ ସ୍ୱତ୍ତ୍ୱଲିପିରେ ନୂତନ ଭାବେ ଅନ୍ତର୍ଭୁକ୍ତ କରାଯାଇଅଛି । ଏହି ସେବକ ଠାକୁରମାନଙ୍କର ଦୈନନ୍ଦିନ ନୀତି କିପରି ହେଲା ତାହା ପ୍ରଶାସକଙ୍କୁ ଜଣାଇବେ । ଚନ୍ଦନ ଅର୍ଗଳୀ କାଠ ଠାରେ ଚାମର ସେବା ଖଟିବେ ।

ଦୈନନ୍ଦିନ ପଞ୍ଜିକାରେ ଲିପିବଦ୍ଧ କରା ଯାଉଥିବା ସେବକମାନଙ୍କ ବ୍ୟତୀତ ମହାଭୋଇ ସେବକ ନିତ୍ୟ ଅବକାଶ ନୀତି ପାଇଁ ଦହି ଯୋଗାଇଥାନ୍ତି । ଏତଦ୍‌ବ୍ୟତୀତ ଦୈନନ୍ଦିନ ନୀତିରେ କେତେକ ସେବକ ସମ୍ପ୍ରତି ତାଙ୍କର କାର୍ଯ୍ୟ କରୁନଥିବାରୁ ତଥା ଆବଶ୍ୟକତା ନ ପଡୁଥିବାରୁ ସେମାନଙ୍କ ସମ୍ବନ୍ଧରେ ଆଲୋକପାତ କରାଯାଉ ନାହିଁ ।



ପରିଶିଷ୍ଟ - ଗ

# ଶ୍ରୀମନ୍ଦିରର ଦୈନନ୍ଦିନ ନୀତିରେ ବ୍ୟବହୃତ ଶବ୍ଦାବଳୀ

*ଅଧର* : ଠାକୁରଙ୍କର ଏକ ପୁଷ୍ପ ଅଳଙ୍କାରର ନାମକୁ ବୁଝାଏ ।

*ଅବକାଶ* : ଶ୍ରୀବିଗ୍ରହମାନଙ୍କର ପ୍ରାତଃକାଳୀନ ଦନ୍ତମାର୍ଜନ ଓ ସ୍ନାନବିଧିକୁ ଶ୍ରୀମନ୍ଦିର ଭାଷାରେ 'ଅବକାଶ' କୁହାଯାଏ ।

*ଅବଢ଼ା* : ଶ୍ରୀମନ୍ଦିରର ଅନ୍ନ ଭୋଗକୁ (ମହାପ୍ରସାଦ) ଅବଢ଼ା କୁହାଯାଏ ।

*ଅଣସର ପିଣ୍ଡି* : ଭିତରକାଠ ଓ କଳାହାଟ ଦ୍ୱାରର ମଧ୍ୟଭାଗରେ ମୁଗୁନି ପଥରର ଏକ ଚଟାଣ ବା ପିଣ୍ଡିକୁ ଅଣସର ପିଣ୍ଡି କୁହାଯାଏ । ଏହି ସ୍ଥାନର ନାମ ବଲ୍ଲଭ ପିଣ୍ଡି ବୋଲି ସେବକମାନେ କହିଥାନ୍ତି ।

*ଅମୃତ ମଣୋହି* : ଶ୍ରୀବିଗ୍ରହଙ୍କ ନିକଟରେ ଅର୍ପିତ ନୈବେଦ୍ୟ ।

*ଅଳକା* : ଏକ ପ୍ରକାର ପୁଷ୍ପ ଅଳଙ୍କାର ।

*ଅମୋଣିହା ପାଣି* : ଧୂପ ପୂର୍ବରୁ ସୁଆରବଡୁ ସେବକ ଭିତର ପୋଖରିଆ ଓ ବଲ୍ଲଭ ପିଣ୍ଡି ଇତ୍ୟାଦି ସ୍ଥାନ ସଫା କରି (ଧୁଆ ଧୋଇ) ନିମନ୍ତେ ବ୍ୟବହାର କରୁଥିବା ପାଣି ।

*ଉପଚାର* : ସେବା । (ପୂଜା ପାଇଁ ଆବଶ୍ୟକ ଦ୍ରବ୍ୟ)

*ଏକାଏକ ସେବକ* : ଏକାକୀ ସେବକ । ଗୋଷ୍ଠୀ ନଥାଇ ଏକା ସେବା କରୁଥିବା ବ୍ୟକ୍ତି ।

*ଚନ୍ଦନ ଅର୍ଗଳୀ* : ଜଗମୋହନସ୍ଥିତ ଭିତରକାଠକୁ ଚନ୍ଦନ ଅର୍ଗଳି କୁହାଯାଏ । ବିଭିନ୍ନ ଧୂପ ପୂଜା, ଗୋପାଳବଲ୍ଲଭ ଭୋଗ ବ୍ୟତୀତ ଅନ୍ୟ ସମୟରେ ଭକ୍ତ ତଥା ଜନସାଧାରଣ ଠାକୁରମାନଙ୍କୁ ଏହିଠାରେ ଦଣ୍ଡାୟମାନ ହୋଇ ଦର୍ଶନ କରିଥାନ୍ତି । ଏହା ନିକଟରେ ଏକ ପଥର ଉପରେ ଚନ୍ଦନ ସଜଡ଼ା ହେଉଥିବାରୁ ଏହି ଅର୍ଗଳୀର ନାମ ଚନ୍ଦନ ଅର୍ଗଳୀ ।

*ଚର୍ଚ୍ଚା* : ଦୈନନ୍ଦିନ ଓ ପର୍ବପର୍ବାଣୀ ନୀତି ନିମନ୍ତେ ସେବକମାନଙ୍କୁ ଡକାହକା କରୁଥିବା କର୍ମଚାରୀଙ୍କୁ 'ଚର୍ଚ୍ଚା' କୁହାଯାଏ । ସମ୍ପ୍ରତି ଶ୍ରୀମନ୍ଦିର ପ୍ରଶାସନର ପୋଲିସ ବିଭାଗରେ ଚର୍ଚ୍ଚା ପୋଲିସ ନାମରେ ଏକ ସ୍ୱତନ୍ତ୍ର କର୍ମଚାରୀ ଗୋଷ୍ଠୀ ରହିଅଛନ୍ତି ।

*ଚତୁର୍ଦ୍ଧା ମୂର୍ତ୍ତି* : ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କୁ ଚତୁର୍ଦ୍ଧା ମୂର୍ତ୍ତି ରୂପେ ସମ୍ବୋଧନ କରା ଯାଇଥାଏ ।

*ଚଉସରା* : ଏକ ପ୍ରକାର ଚାରିସରିଆ ମାଳ (ପୁଷ୍ପମାଲ୍ୟ) ।

*ଘୋଡ଼ା* : ଚାରି ଗୋଡ଼ ବିଶିଷ୍ଟ କାଠରେ ନିର୍ମିତ ଉଚ୍ଚ ଟେବୁଲ । ଏଥି ଉପରେ ଠିଆ ହୋଇ ପୁଷ୍ପାଳକ ସେବକମାନେ ରତ୍ନସିଂହାସନାଧିଷ୍ଠିତ ସେବକମାନଙ୍କର ମଇଲମ ବେଶ ଓ ଚନ୍ଦନ ଲାଗି ନୀତି ବଢ଼ାଇଥାନ୍ତି ।

*ଗାରଦ ଘର* : ଶ୍ରୀମନ୍ଦିର ମଧ୍ୟରେ ଦୈନନ୍ଦିନ ନୀତି ଓ ଅନ୍ୟାନ୍ୟ କାର୍ଯ୍ୟର ସୁପରିଚାଳନା ନିମିତ୍ତ ଏକ ମଣ୍ଡପ ଗୃହ ରହିଅଛି । ଏହି ଗୃହରେ ମନ୍ଦିର ପ୍ରଶାସନର ଏକ ନିଜସ୍ୱ ପୋଲିସ କାର୍ଯ୍ୟାଳୟ ରହିଅଛି । ଏହାକୁ 'ଗାରଦ ଘର' କୁହାଯାଏ । ଏଠାରେ ମନ୍ଦିର ପୋଲିସ (ଜେ.ଟି.ପି.)ମାନେ ଉପସ୍ଥିତ ହୋଇ ନିଜ ନିଜର କର୍ତ୍ତବ୍ୟ ସଂପାଦନ କରିଥାନ୍ତି ।

*ସହସ୍ର* : ଲୌହ ନିର୍ମିତ କଟୁରୀ ।

*ଅମୋଣିହା* : ମଣୋହି ପାଇଁ ଉଦ୍ଦିଷ୍ଟ ସାମଗ୍ରୀ ।

*ଚଡ଼ପ ଓ ଉତୁରୀ* : ଏକ ପ୍ରକାର ସୂତା ବସ୍ତ୍ରକୁ ବୁଝାଯାଏ ।

*ଉପଚାର ଚାମର ସେବକ* : ଅନୁମତିପ୍ରାପ୍ତ ଚାମର ସେବକ ।

*ଉଲାଗି* : ଠାକୁରମାନଙ୍କ ବେଶ, ପୋଷାକ, ମାଳଚୂଳ ଆଦି କଢ଼ା ଯିବାକୁ ଉଲାଗି କୁହାଯାଏ । (ବେଶଭୂଷାର ପରିବର୍ତ୍ତନ)

*କନକ ମୁଣ୍ଡାଇ* : ରତ୍ନସିଂହାସନ ଉପରେ ଥିବା କାଠ ନିର୍ମିତ ଏକ ମଣ୍ଡପ ।

*କର୍ମାଙ୍ଗୀ* : ମାଦଳା ପାଞ୍ଜିରୁ ଏକ ଅଂଶ, ଯେଉଁଥିରେ କି ସେବକାଦି କାର୍ଯ୍ୟ ଲିପିବଦ୍ଧ ।

*କଳାହାଟ ଦ୍ୱାର* : ଶ୍ରୀମନ୍ଦିରରେ ଗର୍ଭଗୃହ ବା ପୋଖରିଆକୁ ପ୍ରବେଶ ଦ୍ୱାର । ଏହି ଦୁଆରର ନାମ ଛାମୁଦୁଆର, ବଡ଼ ଦୁଆର ।

*କୁଡୁଆ* : ମାଟି ପାତ୍ର ବିଶେଷ ।

*କୋଠ ଭୋଗ (ରାଜ ଭୋଗ)* : (ରାଜ ଭୋଗ) ଖଞ୍ଜା ଭୋଗ ମନ୍ଦିର ପ୍ରଶାସନ ଖର୍ଚ୍ଚରେ ପ୍ରତ୍ୟହ ଏହି ଭୋଗ ଶ୍ରୀଜୀଉଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହୋଇଥାଏ ।

*ଖେଇ* : ସେବା ବାବଦ ପ୍ରାପ୍ୟ ଭାବରେ ମିଳୁଥିବା ଭୋଗର ଅଂଶବିଶେଷ ।

*ବଡ଼ବାଡ଼* : ଶ୍ରୀବଳଭଦ୍ର ।

*ମହାପ୍ରଭୁଙ୍କ ବାଡ଼* : ଶ୍ରୀଜଗନ୍ନାଥ ।

*ମଝି ବାଡ଼* : ଶ୍ରୀସୁଭଦ୍ରା ।

*ସୁଦର୍ଶନଙ୍କ ବାଡ଼* : ଶ୍ରୀସୁଦର୍ଶନ ।

*ବଇଠା (ପ୍ରଦୀପ)* : ଦୀପ ରଖିବା ସ୍ଥାନକୁ ବଇଠା କୁହାଯାଏ ।

*ବଟା* : ବିଭିନ୍ନ ଧାତୁ ନିର୍ମିତ ପାତ୍ରକୁ ବୁଝାଏ ।

*ଖଟଣି* : ବରାଦ ଦିଆ ମହାପ୍ରସାଦ । ଭୋଗମଣ୍ଡପରେ ବ୍ୟକ୍ତିବିଶେଷ ଓ ମଠାନୁଷ୍ଠାନଙ୍କର ଖଟଣି ଭୋଗ ହୋଇଥାଏ ।

*ପାଳିଆ* : ସେବକମାନଙ୍କର ପ୍ରତ୍ୟହ ଠାକୁରଙ୍କ ନିକଟରେ ସେବା ପଡୁଥିବା ଅବସରରେ ତାଙ୍କୁ ସେ ଦିନର ପାଳିଆ ସେବକ ବୋଲି କୁହା ଯାଇଥାଏ ।

*ଘଷାଜଳ* : ଚନ୍ଦନ, ଜାଇଫଳ ଇତ୍ୟାଦି ମିଶ୍ରିତ ସୁବାସିତ ଜଳ ।

*ଗଣ୍ଡୁଷ ଜଳ* : ଅବକାଶରେ ଶ୍ରୀବିଗ୍ରହଙ୍କ ଦନ୍ତଧାବନ, ଜିହ୍ୱା ପରିଷ୍କରଣ ନୀତି ପରେ ଗୋକର୍ଣ୍ଣାକୃତି ହସ୍ତରେ ୧୨ ଥର ଦତ୍ତ ଜଳ ।

*ଚାଙ୍ଗଡ଼ା ଘର* : ରତ୍ନସିଂହାସନାଧିଷ୍ଠିତ ଶ୍ରୀବିଗ୍ରହମାନଙ୍କ ବସ୍ତ୍ର ଇତ୍ୟାଦି ରହୁଥିବା ଏକ ଘରକୁ ଚାଙ୍ଗଡ଼ା ଘର କୁହାଯାଏ ।

*ଛପନ ଭୋଗ* : ଅନ୍ନ ବ୍ୟଞ୍ଜନ ପିଷ୍ଟକାଦି ବହୁବିଧ ନୈବେଦ୍ୟ ।

*ଛେକ* : ଭୋଗ ନିମନ୍ତେ ଭାରରେ ବୁହା ଯାଉଥିବା ଅନ୍ନ ବ୍ୟଞ୍ଜନ ଇତ୍ୟାଦିକୁ 'ଛେକ' କୁହାଯାଏ ।

*ଜଗମୋହନ* : ଗର୍ଭଗୃହ ସମ୍ମୁଖରେ ଦର୍ଶନାର୍ଥୀ ତଥା ଭକ୍ତଙ୍କ ସମାବେଶ ଉଦ୍ଦେଶ୍ୟରେ ନିର୍ମିତ ମଣ୍ଡପ ।

*ଜୟ ବିଜୟ ଦ୍ୱାର* : ଜଗମୋହନ ଭିତରକୁ ପ୍ରବେଶ ଦ୍ୱାର । ବିଷ୍ଣୁଙ୍କ ଦ୍ୱାରପାଳ ଦ୍ୱୟ ଏହି ଦ୍ୱାରରେ ବିରାଜିତ ହୋଇଥିବାରୁ ଏହାକୁ ଜୟ ବିଜୟ ଦ୍ୱାର କୁହା ଯାଉଅଛି । ଏଠାରେ ପ୍ରତ୍ୟହ ଦ୍ୱାରପାଳ ପୂଜା ଓ ଶୟନ ଠାକୁର ଇତ୍ୟାଦି ବିଜେ ନୀତି ଅନୁଷ୍ଠିତ ହୋଇଥାଏ ।

*ମଙ୍ଗଳ ଆଳତି* : ଠାକୁରଙ୍କ ସକାଳ ନିଦ୍ରା ଭଙ୍ଗ ପରେ ଅନୁଷ୍ଠିତ ପ୍ରଥମ ଆଳତିକୁ 'ମଙ୍ଗଳ ଆଳତି' କୁହାଯାଏ ।

*ଜୟମଙ୍ଗଳ ଆଳତି* : ସନ୍ଧ୍ୟା ଆଳତି ପରେ ଅତିରିକ୍ତ ଦୁଇଟି ଆଳତିକୁ 'ଜୟମଙ୍ଗଳ ଆଳତି' କୁହାଯାଏ ।

*ଟେରା* : ଧୂପ ବା ଭୋଗ ସମୟରେ ବ୍ୟବହୃତ ହୁଏ । ଆଡୁଆଳ ପାଇଁ କନାର ପରଦା । (ନିରୂପିତ ଭୋଗ ସ୍ଥାନର ସୂଚନା ପାଇଁ କରା ଯାଉଥିବା ବାରଣ)

*ଧୂପ* : ନିର୍ଦ୍ଦିଷ୍ଟ କାଳରେ ଠାକୁରଙ୍କ ଉଦ୍ଦେଶ୍ୟରେ କରା ଯାଉଥିବା ଭୋଗ । (ଭୋଗ ପୂଜା)

*ଓ୍ୟାକବ* : ଜଣାଇବା ।

*ଓ୍ୟାପସ୍* : ଫେରାଇବା ।

*ପିଙ୍ଗଣ* : ଏକ ପ୍ରକାର ଧାତୁ ପାତ୍ରକୁ ବୁଝାଏ ।

*ପରଖ* : ଏକ ପ୍ରକାର ଧାତୁ ପାତ୍ରକୁ ବୁଝାଏ ।

*ଡମ୍ବରୁ* : ଡମ୍ବରୁ ଆକୃତିର ବେତ ତିଆରି ଏକ ଆସନ ।

*ତଡ଼ପ* : ବସ୍ତ୍ର ବିଶେଷ । ଏକ ପ୍ରକାର ସୂତା ବସ୍ତ୍ରକୁ ତଡ଼ପ କୁହାଯାଏ ।

*ଦକ୍ଷିଣ ଘର* : ବିଜେ (ଚଳନ୍ତି) ପ୍ରତିମାମାନେ ରହୁଥିବା ମନ୍ଦିର । ମୁଖ୍ୟ ମନ୍ଦିରର ଦକ୍ଷିଣ ଦିଗରେ ଅବସ୍ଥିତ । ମହାଜନ (ପୁଷ୍ପାଳକ) ଶ୍ରେଣୀୟ ସେବକ ଏଠାରେ ସେବା କରନ୍ତି ।

*ଧୁକୁଡ଼ି ଦ୍ୱାର* : ଭିତର କାଠ ବାମ ପାର୍ଶ୍ୱରେ ପୋଖରିଆ ବା ଗମ୍ଭୀରାକୁ ଯିବା ପାଇଁ ଏକ ବଡ଼ ରାସ୍ତା । ଏକ ଯାତାୟାତ ପଥ । ସେବକମାନେ ସେବା କରିବା ପାଇଁ ଯିବା ଆସିବା ଏହି ବାଟ ଦେଇ କରିଥାନ୍ତି ।

*ଧୋ ପଖାଳ* : ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଧୁଆଧୋଇ ସଫା ସଫି କରାଯିବାକୁ ଧୋ ପଖାଳ କୁହାଯାଏ ।

*ନଣ୍ଡାବର୍ତ୍ତ / ନନ୍ଦାବର୍ତ୍ତ* : ଅର୍ଦ୍ଧବୃତ୍ତାକାର ପାହାଚ । କଳାହାଟ ଦ୍ୱାରର ଏକ ପାବଚ୍ଛକୁ ନଣ୍ଡାବର୍ତ୍ତ ବା ନନ୍ଦାବର୍ତ୍ତ କୁହାଯାଏ ।

*ନିଯୋଗ* : ସେବା ବ୍ୟବସ୍ଥା : ନିୟୋଜିତ ସେବକ ଗୋଷ୍ଠୀ ।

*ଭୋଗମଣ୍ଡପ (ଭଅଣ୍ଡ)* : ବିଭିନ୍ନ ଖଟଣି, ବିକ୍ରୟ ଉଦ୍ଦେଶ୍ୟରେ ସୂପକାରମାନେ ପ୍ରସ୍ତୁତ କରୁଥିବା ପ୍ରସାଦ ଏହି ଭୋଗ ମଣ୍ଡପରେ ପୂଜା ହୋଇଥାଏ । ଏଥିପାଇଁ ନାଟ ମନ୍ଦିରକୁ ଲାଗି ଏକ ସ୍ୱତନ୍ତ୍ର ଭୋଗମଣ୍ଡପ ଗୃହ ରହିଛି ।

*ପଛ ଭଅଣ୍ଡ* : ପ୍ରଥମ ଭୋଗମଣ୍ଡପ ବା ଭଅଣ୍ଡ ପରେ ଆବଶ୍ୟକତା ଅନୁଯାୟୀ ଅତିରିକ୍ତ ଭଅଣ୍ଡ ।

*ପଟନି* : ବସ୍ତ୍ର ବିଶେଷ ।

*ପରିଛା / ପରୀକ୍ଷା* : ନିରୀକ୍ଷକ । ତନ୍ନ ତନ୍ନ କରି ଦେଖିବା । ବିଶେଷ ଭାବରେ ଦେଖିବା ।

*ପରିମାଣିକ* : ସାହାଣମେଲା ବ୍ୟତୀତ ଅନ୍ୟ କେତେକ ନିର୍ଦ୍ଦିଷ୍ଟ ସମୟରେ ଦର୍ଶନ ନିମନ୍ତେ ଯାତ୍ରୀଙ୍କ ଠାରୁ ଏକ ଫିସ୍ ରଖାଯାଇ ଦିଆ ଯାଉଥିବା ଅନୁମତି । ଏହାକୁ ଶ୍ରୀମନ୍ଦିର ଭାଷାରେ ପରିମାଣିକ ଦର୍ଶନ କୁହାଯାଏ ।

*ପିଣ୍ଡିକା* : ପିଣ୍ଡି ନିକଟରେ ପ୍ରଦତ୍ତ ଭେଟି / ଦାନ ।

*ପହଡ଼* : ଦେବ ନିଦ୍ରା ।

*ପସରତିଆ* : କୋଠ ଭୋଗ ବା ରାଜ ଭୋଗର ମହାପ୍ରସାଦ ବିକ୍ରେତା । ଏମାନେ ରାଜା ଓ ସେବକଙ୍କର ଖେଇ ମହାପ୍ରସାଦ ବିକ୍ରୟ କରି ଲାଭାଂଶ ରଖନ୍ତି ।

*ପୁଷ୍ପାଞ୍ଜଳି ଠାକୁର* : ଅର୍ଦ୍ଧନାରୀଶ୍ୱର ଲକ୍ଷ୍ମୀ ନାରାୟଣ ପ୍ରତିମା ।

*ପୋଖରିଆ* : ଗର୍ଭଗୃହସ୍ଥ ରତ୍ନସିଂହାସନ ଚତୁଃପାର୍ଶ୍ୱସ୍ଥ ଅଞ୍ଚଳ ।

*ପୋଛା* : ସଂପୃକ୍ତ ସେବକ ତଳେ ଠିଆ ହୋଇ ରତ୍ନସିଂହାସନ ଉପରକୁ ହାତ ପାଇବା ପର୍ଯ୍ୟନ୍ତ ଟଙ୍କା ପଇସା ଆଦି ପୋଛି ଆଣିବା ଅର୍ଥରେ ପୋଛା କୁହାଯାଏ । ଅନ୍ୟ ଅର୍ଥରେ ଗାମୁଛାକୁ ପୋଛା କୁହାଯାଏ ।

*ପ୍ରଭା* : ଧାତୁ ବା କାଷ୍ଠ ନିର୍ମିତ ସିଂହାସନ ପଛ ମେଢ଼ ।

*ବଟା ଉପର* : ଚାଙ୍ଗଡ଼ା ଘରର ଛାତ । ଏଠାରେ ମାଳ, ଫୁଲ, ତୁଳସୀ ଆଦି ରହିଥାଏ ।

*ବଡ଼ ସିଂହାର* : ଠାକୁରଙ୍କର ପହୁଡ଼ ପୂର୍ବର ବିଶେଷ ଶୃଙ୍ଗାର ବା ବେଶ ଭୂଷା ।

*ବାସିପାଳିଆ* : ରାତିରୁ ସେବାରେ ରହିଥିବା ସେବକ ଯେ କି ତତ୍‌ପର ଦିନ ଉପସ୍ଥିତ ହୋଇଥାନ୍ତି ।

*ବିଜେ* : ଦେବତାଙ୍କ କୌଣସି ସ୍ଥାନକୁ ଗମନ କରିବା ପାଇଁ ବିଜେ କୁହାଯାଏ ।

*ଭୋଗ ଡାକି ଯିବା* : ପନ୍ତିରେ ଭୋଗ ବାଢ଼ିବା ପାଇଁ ଡାକିବାକୁ ଯିବା ।

*ମଣତି* : ଦାୟିତ୍ୱରେ ଥିବା ଜିନିଷାଦ୍ ଅନ୍ୟ ସେବକଙ୍କୁ ବୁଝାଇବା ।

*ମଣୋହି* : ଦେବତାଙ୍କ ଖାଦ୍ୟ ବା ଭୋଜନ ।

*ଅମୃତ ମଣୋହି* : ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟ ।

*ରତ୍ନବେଦୀ/ରତ୍ନମଣ୍ଡପ/ରତ୍ନସିଂହାସନ* : ଶ୍ରୀଜଗନ୍ନାଥାଦି ସପ୍ତଧାମୂର୍ତ୍ତି ଆସୀନ ହୋଇଥିବା ମଣ୍ଡପ ବା ସିଂହାସନ ।

*ମହାର୍ଦ୍ଧ ପାଣି* : ଭୋଗ ପରେ ସୁଆରବଡୁ ଧୁଆଧୋଇ ପାଇଁ ବ୍ୟବହାର କରୁଥିବା ପାଣି ।

*ମହାସ୍ନାନ* : ବିଶେଷ ସ୍ନାନ ବିଧି ।

*ମାଲ* : ଭୋଗ, ମାଲ ବାହାରିବା ।

*ମୁଦ* : ଦ୍ୱାର ଆଦି ବନ୍ଦ କରି ତହିଁରେ ମୋହର ଛାପ ଦିଆଯାଏ ।

*ମୂର୍ତ୍ତି* : ଖଣ୍ଡ ବା ଜଣ । ଏକ ପରିମାଣ ସୂଚକ । ଶ୍ରୀମନ୍ଦିରରେ ଭୋଗ, ବସ୍ତ୍ର ଓ ଦେବତାଙ୍କ ନିକଟରେ ଏହି ଶବ୍ଦ ବ୍ୟବହାର କରା ଯାଇଥାଏ ।

*ମୂତ୍ତୁମୂଳ :* ନୈବେଦ୍ୟକୁ ଅର୍ପଣଯୋଗ୍ୟ କରିବା । ଯଥା, ଖେଚୁଡ଼ି, ଅନ୍ନ ଇତ୍ୟାଦିକୁ ଚାପିଚୁପି ସଜେଇ ତା'ଉପରେ ଅଦା, ହେଙ୍ଗୁ, ଘିଅ ଇତ୍ୟାଦି ମସଲା ପକାଯାଏ । ପିଠା ଉପରେ ଖଣ୍ଡ ସିଞ୍ଚା ଯାଇ ମୂତ୍ତୁମୂଳ କରା ଯାଇଥାଏ ।

*ଯୋଗାଣିଆ :* ବିଭିନ୍ନ ନୀତିରେ ଆବଶ୍ୟକ ଜିନିଷାଦି ଯୋଗାଉଥିବା ସେବକ ।

*ରତ୍ନ ପଲଙ୍କ :* ଠାକୁରଙ୍କ ପହୁଡ଼ ନିମନ୍ତେ ବ୍ୟବହୃତ ରୂପା ପଲଙ୍କ ।

*ରସ ଦାୟକ :* ଭାଗ, ପ୍ରାପ୍ୟାଂଶ ।

*ଶୋଧ :* ଲୋକ ଖାଲି କରିବା । ବିଭିନ୍ନ ନୀତି ନିମନ୍ତେ ପୋଖରିଆରୁ ଲୋକ ଖାଲି କରା ଯାଇଥାଏ । ଏତଦ୍‌ବ୍ୟତୀତ ପହୁଡ଼ ପରେ ଶ୍ରୀମନ୍ଦିରରୁ ଲୋକ ଖାଲି କରାଯାଇ ଶୋଧ ହୋଇଥାଏ ।

*ସଜପାଳିଆ :* ରାତିରେ ପାଳି ଖଟିଥିବା ବା ବାସି ପାଳିଆଙ୍କୁ ଦାୟିତ୍ୱ ମୁକ୍ତ କରି ସେବାରେ ନିଯୁକ୍ତ ସେବକ ।

*ସାତ ପାହାଚ :* ଜଗମୋହନ ଉତ୍ତରପଟ ପ୍ରବେଶ ପଥରେ ସାତ ପାହାଚ ।

*ସାହାଣମେଲା :* ସର୍ବସାଧାରଣ ଦର୍ଶନ ନିମିତ୍ତ ଉନ୍ମୁକ୍ତ ଦ୍ୱାର । ଏହି ସମୟରେ ଭକ୍ତ ତଥା ଦର୍ଶନାର୍ଥୀମାନେ ରତ୍ନସିଂହାସନ ନିକଟକୁ ଯାଇ ପାରିଥାନ୍ତି ।

*ହାତୁଆଣି :* ନୀତି ସମୟରେ ହାତ ଧୋଇବା ପାଇଁ ଦିଆଯିବା ପାଣି ।

*ସ୍ୱତ୍ୱଲିପି :* ଆଇନାନୁଯାୟୀ ଶ୍ରୀମନ୍ଦିରର ସେବା ଓ ସେବକମାନଙ୍କର କାର୍ଯ୍ୟ ସଂପର୍କୀୟ ଲିପିବଦ୍ଧ ବିବରଣୀ ।

*ବେହେରଣ ଦ୍ୱାର :* ଶ୍ରୀମନ୍ଦିର ମୁଖ୍ୟ ମନ୍ଦିର ସଂଲଗ୍ନ ଜଗମୋହନର ଦକ୍ଷିଣ ଭାଗରେ ଅବସ୍ଥିତ ଦ୍ୱାର ବେହେରଣ ଦ୍ୱାର ତଥା ଦକ୍ଷିଣି ଦ୍ୱାର ନାମରେ ପରିଚିତ ।

*ବାହାର କାଠ :* ଜୟ ବିଜୟ ଦ୍ୱାର ସମ୍ମୁଖରେ ଥିବା କାଠକୁ ବାହାର କାଠ କୁହାଯାଏ । କେତେକ ନିର୍ଦ୍ଦିଷ୍ଟ ନୀତି ଯଥା ଭୋଗ ସମୟରେ ଦର୍ଶନାର୍ଥୀମାନେ ଏହିଠାରେ ଠାକୁରମାନଙ୍କୁ ଦର୍ଶନ କରିଥାନ୍ତି ।

*ଶ୍ରୀଅଙ୍ଗ :* ବିଗ୍ରହଙ୍କ ଶ୍ରୀଭୁଜ ଓ ଅନ୍ୟାନ୍ୟ ଅଂଶକୁ ଶ୍ରୀଅଙ୍ଗ କୁହାଯାଏ ।

*କଂସ ପାହାରି :* ଭିତରକାଠ ନିକଟସ୍ଥ ଅଣସର ପିଣ୍ଡିର ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ କଂସ ପାହାରି କୁହାଯାଏ ।

*ଝରି :* ଗଡୁ ବା ଡ଼ାଲ ସଦୃଶ ପାତ୍ର । ଏହି ପାତ୍ରରେ ଯାତ୍ରୀମାନେ ଅର୍ଥ ଦାନ କରିଥାନ୍ତି ।

*ଚତୁର୍ଦ୍ଧାମୂର୍ତ୍ତି* : ରତ୍ନସିଂହାସନାସୀନ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କୁ ଚତୁର୍ଦ୍ଧାମୂର୍ତ୍ତି କୁହାଯାଏ ।

*ସପ୍ତବିଗ୍ରହ* : ରତ୍ନସିଂହାସନାସୀନ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀସୁଦର୍ଶନ, ମାଧବ, ଭୂଦେବୀ, ଶ୍ରୀଦେବୀ ସପ୍ତବିଗ୍ରହ ରୂପେ ପରିଚିତ ।

*ଲାଗି* : ଠାକୁରଙ୍କୁ ପୁଷ୍ପମାଲ୍ୟ ବା ବସ୍ତ୍ର ପିନ୍ଧାଇବାକୁ ଲାଗି କୁହାଯାଏ ।

*ପାଣି ଝରି* : ପିତଳ ଗଡ୍ଡୁ ସଦୃଶ ।

*ବରକନ୍ଦାଜ* : ଶ୍ରୀମନ୍ଦିର ପୋଲିସମାନଙ୍କୁ 'ବରକନ୍ଦାଜ' କୁହାଯାଏ ।

*ପୂଜା ଠା* : ଧୂପ ପୂର୍ବରୁ ପୂଜା ଉପକରଣ ପ୍ରସ୍ତୁତ କରିବାକୁ ପୂଜା ଠା କୁହାଯାଏ ।

*ପନ୍ତି* : ମୁରୁଜ ଭିତରେ ଭୋଗ ବାଢ଼ିବାକୁ ପନ୍ତି କୁହାଯାଏ ।

*ଟେରା ବାନ୍ଧିବା* : ଏକ ବସ୍ତ୍ର ପରଦା ବା ଆଢୁଆଳ ଦେବା । ଏହି ବସ୍ତ୍ରକୁ ବାନ୍ଧିବାକୁ ଟେରା ବାନ୍ଧିବା କୁହାଯାଏ ।

*ଟେରା ପଡ଼ିବା* : ବନ୍ଧା ଯାଇଥିବା ବସ୍ତ୍ରକୁ ଖୋଲାଯାଇ ଦ୍ୱାର ବନ୍ଦ କରିଦେବାକୁ ଟେରା ପଡ଼ିବା କୁହାଯାଏ । ଏଠାରେ ଦ୍ୱାର ଖୋଲା ହେବାକୁ ଟେରା ଫିଟିଲା ବୋଲି ଶ୍ରୀମନ୍ଦିରରେ କହିଥାନ୍ତି ।

*ସିଂହାର* : ବେଶ ଲାଗିକୁ ବୁଝାଏ ।

*ସର୍ବାଙ୍ଗ* : ଶ୍ରୀବିଗ୍ରହଙ୍କ ଶ୍ରୀଅଙ୍ଗରେ ଚନ୍ଦନଲାଗିକୁ 'ସର୍ବାଙ୍ଗ' କୁହାଯାଏ ।

*ପାଦ୍ୟ* : ଶ୍ରୀବିଗ୍ରହଙ୍କର ପାଦ ପ୍ରକ୍ଷାଳନ ଓ ଜଳକୁ ପାଦ୍ୟ କୁହାଯାଏ ।

*ପହୁଡ଼* : ଠାକୁରଙ୍କ ଶୟନ ସମୟକୁ ପହୁଡ଼ କୁହାଯାଏ ।

*ତଡ଼ାଉ ଲାଗି* : ଶ୍ରୀବିଗ୍ରହମାନଙ୍କର ଅଳଙ୍କାର ଲାଗିକୁ ବୁଝାଏ ।

*ଠା'* : ଯଥା ସ୍ଥାନରେ ରଖିବା ଅର୍ଥକୁ ବୁଝାଏ । ସିଂହାସନ ତଳେ ପୂଜା ଭୋଗଦ୍ରବ୍ୟ ଉପଚାରାଦିକୁ 'ଠା' କରି ରଖନ୍ତି ।

*କାଠି ଲାଗି* : ଶ୍ରୀବିଗ୍ରହମାନଙ୍କର ଦନ୍ତ ମାର୍ଜନାକୁ କାଠି ଲାଗି କୁହାଯାଏ । ମୁତୁରି କାଠିରେ ଦାନ୍ତ ଘଷା ହେବାର ନିୟମ ।

*ଭୋଗ ମୁରୁଜ କଟା ସୀମା* : ପ୍ରତ୍ୟହ ସକାଳ ଧୂପ ସମୟରେ ପୂଜାପଣ୍ଡା ସେବକ ରତ୍ନସିଂହାସନ ନିକଟରେ ବଳଭଦ୍ରଙ୍କ ଠାରୁ ଆରମ୍ଭ କରି ଜଗନ୍ନାଥଙ୍କ ପର୍ଯ୍ୟନ୍ତ ବାହାର ସୀମାରେ ମୁରୁଜ ପକାଇ ପନ୍ତି କାଟନ୍ତି । ଭୋଗ ସବୁ ଏହି ମୁରୁଜ ସୀମା ଭିତରେ ରଖାଯାଏ । ମୁରୁଜକଟା ସୀମା ବାହାରେ ରହିଲେ, ଭୋଗ ଶଙ୍ଖୁଡ଼ି ହୁଏ ।



**ପରିଶିଷ୍ଟ - ଘ**

# ଦୈନନ୍ଦିନ ନୀତିରେ ମଣୋହି ହେଉଥିବା କୋଠ ଭୋଗ ସାମଗ୍ରୀ ତାଲିକା

ବଲ୍ଲଭ ଖଇ, ନଡ଼ିଆ ଖୁଦି, କୋରା, ପିଠାପୁଳି, ହଂସକେଳି, କାନ୍ତି, ଗୋଟା ଏଣ୍ଡୁରୀ, ଚଣ୍ଡମାଠପୁଳି, ମାଠପୁଳି, କାକତୁଆ, ଝିଲି, ଦେଶୀଆଳୁ, କଦଳୀ ଭଜା, ଅଦା ପାଚେଡ଼ି, ବୁନ୍ଦିଆ, ଥାଳି ଖେଚେଡ଼ି, ତାଟ ଖେଚେଡ଼ି, ମେଣ୍ଢା ମୁଣ୍ଡିଆ ଖେଚେଡ଼ି, ଓଳି ଖେଚେଡ଼ି, କାନିକା, ଶାଗ, ନୁଖୁରା ଖେଚେଡ଼ି, ବଡ଼ ପିଠା, ଛେନା ପିଠା, ତିପୁରୀ, ଆରିସା, କାକରା, ଫେଣି, ଓରିଆ, ମୁଗଡାଲି, ମରିଚିପାଣି, ଝଡ଼େଇନେଦା, ଝଡ଼େଇ ମନୋହର, ତାଟ ମନୋହର, ସୁଆର ମନୋହର, ଧଉଳା, ଖଇରଚୂଳ, ପୁଷ୍ପାଳକ ଆରିସା, ମରିଚିନଡ୍ଡୁ, ଟାକୁଆ, ଗଜା, ବିରିବଡ଼ି, କଡ଼ମ୍ବା, ପଣା, ଖରିସା; ସୁଜିବଡ଼ି ଖିରି, ସୁବାସ ପଖାଳ, ସାକରା, ଚୁପୁଡ଼ା ପଖାଳ, ପାଣି ପଖାଳ, ଅମାଲୁ, କଅଁଳ ପୁଳି, ହାତପୋଡ଼ା ଅମାଲୁ, ବିରିବୁହା ପିଠା, ସରପୁଳି, ସୁଆର ପିଠା, ରୋଷ ପାଇକ ପିଠା, ମିଠା ପଖାଳ, କଦଳୀ ବଡ଼ା, କାଂଜି, ଖିରି ।

ଉପରୋକ୍ତ ରାଜଭୋଗ ସାମଗ୍ରୀ ବ୍ୟତୀତ ଦୈନିକ ଭୋଗ ମଣ୍ଡପରେ ସାଧା ଅନ୍ନ, ଘିଅ ଅନ୍ନ, କାନିକା, ଖେଚେଡ଼ି, ଡାଲି, ମିଠା ଡାଲି, ଡାଲେମା, ବେସର, ମହୁର, ଶାଗ, ଗୋଟି ବାଇଗଣ, ଗୋଟା ଶୋଲା, ଫାଳ ଶୋଲା, ଗୋଟି ପୋଟଳ, ଦହି ବାଇଗଣ, ଛେନା ତରକାରୀ, ଗୋଟା ମୁଗ, ମଧୁରୁଚି ପ୍ରଭୃତି ବିଭିନ୍ନ ପ୍ରକାରର ଅନ୍ନ ବ୍ୟଞ୍ଜନ ଭୋଗ ହୋଇଥାଏ ।

(ସୂଚନାଯୋଗ୍ୟ ଯେ, ରାଜଭୋଗ ନିମନ୍ତେ ମୁଖ୍ୟତଃ ଅଟା, ଗୁଡ଼, ଘିଅ, ଚିନି, ବିରି, ଚାଉଳ ଚୂନା ଇତ୍ୟାଦି ସାମଗ୍ରୀର ଆବଶ୍ୟକ ପଡ଼ିଥାଏ ।)



ପରିଶିଷ୍ଟ - ଙ

# ଦୈନନ୍ଦିନ ନୀତିରେ ବ୍ୟବହୃତ ପୁଷ୍ପ ଅଳଙ୍କାର ତାଲିକା

(ଦୈନିକ ବିଭିନ୍ନ ପୁଷ୍ପ, ତୁଳସୀ, ପଣସପତ୍ର, କଦଳୀପତ୍ର, ପଟୁକା, ସୁତା ଇତ୍ୟାଦିରେ ନିମ୍ନଲିଖିତ ପୁଷ୍ପ ଅଳଙ୍କାର ଓ ମାଳ ଶ୍ରୀମନ୍ଦିରରେ ପ୍ରସ୍ତୁତ ହୋଇଥାଏ ।)

(୧) କରପଲ୍ଲବ

(୨) କୁଣ୍ଡଳ

(୩) ତଡ଼ଗି

(୪) ଚନ୍ଦ୍ରିକା

(୫) ଗଭା

(୬) ଅଳକା

(୭) ତିଳକ

(୮) ଝୁମ୍ପା

(୯) ନାକୁଆସି

(୧୦) ଦୟଣା

(୧୧) ଅଧରମାଳ

(୧୨) ମକର କୁଣ୍ଡଳ

(୧୩) ଶ୍ରୀପୟରମାଳା

(୧୪) ହୃଦୟ ପଦକ

(୧୫) କଳି ପଦକ

(୧୬) କୌସ୍ତୁଭ ପଦକ

(୧୭) ଚଉସରା ମାଳ

(୧୮) ଗୁଣା

ପରିଶିଷ୍ଟ - ଚ

# ଦୈନନ୍ଦିନ ନୀତିରେ ବ୍ୟବହୃତ ବସ୍ତ୍ର ତାଲିକା

ଗୀତଗୋବିନ୍ଦ ଖଣ୍ଡୁଆ ବସ୍ତ୍ର

ତଡ଼ପ

ଉତ୍ତରୀୟ

ପହରଣ

ଫୁଟା

ଶିରକପଡ଼ା (ଶ୍ରୀକାପଡ଼ା)

ବାରଲାଗି ପାଟ (ସଜ)

ଶ୍ରୀମୁଖବଲା (ସୂତା)

ସୂତା ଲୁଗା

ଚନ୍ଦନଗୁଡ଼ା

ସୂତା ଚାଦର



**ପରିଶିଷ୍ଟ - ଛ**

# ଶ୍ରୀମନ୍ଦିରର କେତେକ ନିଯୋଗର ନାମ ତାଲିକା

୧ । ପୁଷ୍ପାଳକ ନିଯୋଗ
୨ । ପୂଜାପଣ୍ଡା ନିଯୋଗ
୩ । ଭିତର ସେବାୟତ ନିଯୋଗ
୪ । ପ୍ରତିହାରୀ ନିଯୋଗ
୫ । ସୁଆର ମହାସୁଆର ନିଯୋଗ
୬ । ଦଇତାପତି ନିଯୋଗ
୭ । ଗରାବଡୁ ନିଯୋଗ
୮ । ପତ୍ରିବଡୁ ନିଯୋଗ
୯ । ସୁଆରବଡୁ ନିଯୋଗ
୧୦ । ଖୁଣ୍ଟିଆ ନିଯୋଗ
୧୧ । ମେକାପ ନିଯୋଗ
୧୨ । ମହାଜନ ନିଯୋଗ
୧୩ । ବଡୁ ସୁଆର ନିଯୋଗ
୧୪ । ଦର୍ପଣିଆ ନିଯୋଗ
୧୫ । ସୁଧ ସୁଆର ନିଯୋଗ
୧୬ । ଅଣସର ସୁଦ ସୁଆର ନିଯୋଗ
୧୭ । ଦତ୍ତ ମହାପାତ୍ର ନିଯୋଗ
୧୮ । କୋଠ ସୁଆଁସିଆ ନିଯୋଗ
୧୯ । ପାଣିଆପଟ ନିଯୋଗ
୨୦ । ବିମାନବଡୁ ନିଯୋଗ
୨୧ । ଧୋ ପଖାଳ ନିଯୋଗ
୨୨ । ବିଡୁଆ, ବେହେରା, ପନ୍ତିବଡୁ ନିଯୋଗ
୨୩ । ଘଣ୍ଟୁଆ ନିଯୋଗ
୨୪ । ଘଟୁଆରୀ ନିଯୋଗ
୨୫ । ମୁଦୁଲି ନିଯୋଗ
୨୬ । କୋଠ ଭୋଗ ପାଣିଆ ନିଯୋଗ
୨୭ । ହଡ଼ପ ନାୟକ ନିଯୋଗ
୨୮ । ପ୍ରଧାନୀ ନିଯୋଗ
୨୯ । ଚୁନରା ନିଯୋଗ
୩୦ । ଛତାର ନିଯୋଗ
୩୧ । ସୁଆର ମହାସୁଆର ରୋଷ କମିଟି ।



# ଏକାଏକ ସେବକ / ନିଯୋଗ

୧ । ଗଜପତି
୨ । ଭିତରଛୁ
୩ । ତଳିଛୁ
୪ । ମୁଦିରସ୍ତ
୫ । ଦେଉଳକରଣ
୬ । ତଢ଼ାଉକରଣ
୭ । ଦେଉଳ ପୁରୋହିତ
୮ । ଜ୍ୟୋତିଷ
୯ । ପତି ମହାପାତ୍ର
୧୦ । ରାଜଗୁରୁ



# ତଥ୍ୟ ସୂଚନା

## ସହାୟକ ପୁସ୍ତକ ଓ ବ୍ୟକ୍ତିବିଶେଷ


୧. ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି

୨. ପୁରୀ ବୋଲି- ଡଃ ସିଦ୍ଧେଶ୍ୱର ମହାପାତ୍ର

୩. ଶ୍ରୀଜଗନ୍ନାଥଙ୍କ ବେଶ ବୈଶିଷ୍ଟ୍ୟ- ଭାସ୍କର ମିଶ୍ର

୪. ପ୍ରବନ୍ଧେ ଶ୍ରୀଜଗନ୍ନାଥ- ଶ୍ରୀ ମହୀମୋହନ ତ୍ରିପାଠୀ

୫. ସେବକ ଦର୍ପଣ- ବୈଦ୍ୟନାଥ ଗୋଛିକାର

୬. ଶ୍ରୀଜଗନ୍ନାଥ ମନ୍ଦିର ତତ୍ତ୍ୱ ଓ ତଥ୍ୟ- ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ

୭. ଶ୍ରୀଜଗନ୍ନାଥଙ୍କ ସାଂସ୍କୃତିକ ଇତିହାସ- ଭାସ୍କର ମିଶ୍ର

୮. ବ୍ରହ୍ମ ଝଲକ- (ତ୍ରୈମାସକ ପତ୍ରିକା)

୯. ଭଗବତ ଦୟାଲ ଶର୍ମା କମିଟି ରିପୋର୍ଟ, ୧୯୭୮

୧୦. ଶ୍ରୀଜଗନ୍ନାଥ ମନ୍ଦିର ଦୈନିକ ପଞ୍ଜିକା

୧୧. ଜଷ୍ଟିସ୍ ପାତ୍ର କମିଶନ ରିପୋର୍ଟ, ୧୯୭୭

୧୨. ଶ୍ରୀ ମନୋରଞ୍ଜନ ପୁଷ୍ପାଳକ, ପୁଷ୍ପାଳକ ସେବକ, ଶ୍ରୀମନ୍ଦିର

୧୩. ଶ୍ରୀ ରାଧାନାଥ ପ୍ରତିହାରୀ, ଗରାବଡୁ ସେବକ, ଶ୍ରୀମନ୍ଦିର

୧୪. ତଳିଛ ବାସୁଦେବ ମହାପାତ୍ର, ଶ୍ରୀମନ୍ଦିରର ତଳିଛ ସେବକ

୧୫. ଶ୍ରୀ ରାଜକିଶୋର ପ୍ରତିହାରୀ, ଗରାବଡୁ ସେବକ

୧୬. ଶ୍ରୀ ରବିନାରାୟଣ ମିଶ୍ର, ରାଇଟର, ଶ୍ରୀମନ୍ଦିର ଗାରଦ

୧୭. ସିଂହଦ୍ୱାର (ତ୍ରୈମାସିକ ପତ୍ରିକା) ରଥ ସଂଖ୍ୟା- ୨୦୦୦

୧୮. ଶ୍ରୀମନ୍ଦିର ସ୍ୱତ୍ୱଲିପି






## ଶ୍ରୀ ଭାସ୍କର ମିଶ୍ର

ପୁରୀ ସହରର ବାସେଳି ସାହିରେ ଜନ୍ମଗ୍ରହଣ । ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ଗଙ୍ଗାଧର ଆଇନ୍ ମହାବିଦ୍ୟାଳୟ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ., ଏଲ୍.ଏଲ୍.ବି. ଡିଗ୍ରୀ ହାସଲ । ୧୯୯୦ ମସିହାରେ ଶ୍ରୀମନ୍ଦିର ପ୍ରଶାସନରେ ଲୋକ ସମ୍ପର୍କ ଅଧିକାରୀ ଏବଂ ୨୦୦୦ ମସିହାରେ ରାଜ୍ୟ ବିଧି ବିଭାଗ ଦ୍ୱାରା ସ୍ୱତନ୍ତ୍ର ପଦାଧିକାରୀ ରୂପେ ନିଯୁକ୍ତି ପାଇ ସମ୍ପ୍ରତି ମନ୍ଦିର ପ୍ରଶାସନରେ ଉପ ପ୍ରଶାସକ ରୂପେ କାର୍ଯ୍ୟ ତୁଲାଉଛନ୍ତି । ଅଦ୍ୟାବଧି ତାଙ୍କ ରଚିତ ପୁସ୍ତକ ମଧ୍ୟରେ ମୁକ୍ତିମଣ୍ଡପ ଓ ପଣ୍ଡିତ ସଭା, ଦାରୁବ୍ରହ୍ମଙ୍କ ନବକଳେବର, ଶ୍ରୀଜଗନ୍ନାଥ ସଂସ୍କୃତି, ଶ୍ରୀଜଗନ୍ନାଥଙ୍କ ବେଶ ବୈଶିଷ୍ଟ୍ୟ, ମଠ ସଂସ୍କୃତି, ଦୈନନ୍ଦିନ ଶ୍ରୀମନ୍ଦିର ନୀତି, ଶ୍ରୀଗୁଣ୍ଡିଚା ଯାତ୍ରା, ଶ୍ରୀଜଗନ୍ନାଥଙ୍କ ସାଂସ୍କୃତିକ ଇତିହାସ, ଶ୍ରୀକ୍ଷେତ୍ରର ଦେବଦେବୀ, ଶ୍ରୀଗୁଣ୍ଡିଚା ମନ୍ଦିର, ଶ୍ରୀମନ୍ଦିର ନିର୍ମାଣ, ଭାସ୍କର୍ଯ୍ୟ ଓ ସଂରକ୍ଷଣ, Shree Jagannath Culture, ଓଡ଼ିଶାର ଶ୍ରୀଜଗନ୍ନାଥ ମନ୍ଦିର (ପ୍ରଥମ ଓ ଦ୍ୱିତୀୟ ଭାଗ) ଇତ୍ୟାଦି ପୁସ୍ତକ ବହୁଳ ପ୍ରସାରିତ । ପୁସ୍ତକ ରଚନା ପାଇଁ ଶ୍ରେଷ୍ଠ ଯୁବ ଲେଖକ ରୂପେ ୨୦୦୦ ମସିହାରେ ରାଜ୍ୟ ଭୁବନେଶ୍ୱର ପୁସ୍ତକ ମେଳା ତରଫରୁ ସମ୍ମାନିତ । ଶ୍ରୀଜଗନ୍ନାଥ ସଂସ୍କୃତି ଭିତ୍ତିକ ପୁସ୍ତକ ରଚନାରେ ଯୁବ ପୀଢ଼ିମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ରାଜ୍ୟର ବିଭିନ୍ନ ସାହିତ୍ୟ ଅନୁଷ୍ଠାନ ସୁଲେଖା, ଚଳାପଥ, ଅଭିନନ୍ଦନିକା, ପ୍ରିୟପତ୍ର, ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ, କରମକା ଆଶ୍ରମ, ଶ୍ରୀକ୍ଷେତ୍ର ଶ୍ରୀ, ସଙ୍ଗୀତ କଳା ପ୍ରତିଷ୍ଠାନର ଅଧର ଶ୍ରୀ ପ୍ରଭୃତି ବହୁ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧିତ ତଥା ସମ୍ମାନିତ ହୋଇଛନ୍ତି । ସମ୍ପ୍ରତି ଶ୍ରୀ ମିଶ୍ର ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ଅଧୀନରେ ''ଶ୍ରୀଜଗନ୍ନାଥ ଉପାସନାରେ ମଠ ଓ ମନ୍ଦିରମାନଙ୍କ ଭୂମିକା'' ଉପରେ ଗବେଷଣାରତ ।

ISBN 81 7404 036 2